ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟଙ୍କ ଦୃଷ୍ଟିରେ

# ଚଳନ୍ତି ଠାକୁର



ଡକ୍ଟର ଚିତ୍ତ ରଂଜନ ପଣ୍ଡା

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଜଣେ ଖ୍ୟାତନାମା ଗାଳ୍ପିକ । ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ଚଳନ୍ତି ଠାକୁର ଗଳ୍ପ ସଙ୍କଳନ କେନ୍ଦ୍ର ସାହିତ୍ୟ ଏକାଡେମି ଦ୍ୱାରା ପୁରସ୍କୃତ ହୋଇ ତାଙ୍କ ଦକ୍ଷତା ଓ ଲୋକପ୍ରିୟତାର ପରିଚୟ ଦେଇଛି । ଭାରତର ଦେବ ପ୍ରତିମା କଦାପି ପ୍ରାଣହୀନ ନୁହେଁ, ବରଂ ସର୍ବଦା ପ୍ରାଣବନ୍ତ । ଭାରତୀୟ ଆତ୍ମାର ପ୍ରତୀକ ବୁଦ୍ଧଦେବ ଏବେ ବି ବିଶ୍ୱ ବନ୍ଦିତ । ଚଳନ୍ତି ଠାକୁର ଗଳ୍ପ ଗ୍ରନ୍ଥରେ ଭାରତୀୟ ସଂସ୍କୃତି ଓ ପରମ୍ପରା ପ୍ରତି ଗୁରୁତ୍ୱାରୋପ କରାଯାଇଛି । ଆଧ୍ୟାତ୍ମିକ ଉତ୍ତରଣ ଦ୍ୱାରା କଳୁଷିତ ବ୍ୟକ୍ତି ଓ ସମାଜ ଜୀବନକୁ ପବିତ୍ର, ମହତ କରିବାର ପ୍ରତିଶ୍ରୁତି ଦିଆଯାଇଛି । ସାଧାରଣ, ଅସାଧାରଣ ବ୍ୟକ୍ତି ବିଶେଷଙ୍କୁ ଚରିତ୍ର ରୂପେ ନେଇ ମାନବିକତାର କଥା କହିବାରେ ଶାନ୍ତନୁ ଆଚାର୍ଯ୍ୟ ବେଶ୍ ଧୁରୀଣ । ବ୍ୟଞ୍ଜନାତ୍ମକ ଭାଷାଶୈଳୀରେ ତାଙ୍କ ଗଳ୍ପ ସୃଷ୍ଟି ଯେମିତି ଶାଣିତ, ମାର୍ଜିତ ସେମିତି ହୃଦୟସ୍ପର୍ଶୀ ମଧ୍ୟ ହୋଇପାରିଛି । ସାଧାରଣରେ ନିକୃଷ୍ଟ ବିବେଚିତ ଶବ୍ଦ ଗାଳ୍ପିକ ଶାନ୍ତନୁଙ୍କ ଲେଖନୀ ମୂନରେ ଉତ୍କୃଷ୍ଟ ରୂପ ନେଇଛି । ଫାଣ୍ଟାସି ଓ ରହସ୍ୟ ଚେତନାର ପ୍ରୟୋଗରେ ତାଙ୍କ ଗଳ୍ପ ସୃଷ୍ଟି ବାସ୍ତବିକ୍ ଅନନ୍ୟ । ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ଦୃଷ୍ଟିଭଙ୍ଗୀ ଏବଂ ଚଳନ୍ତି ଠାକୁର ଗଳ୍ପ ସଂକଳନର ବୈଶିଷ୍ଟ୍ୟକୁ ଭିତ୍ତି କରି ସମାଲୋଚନା ଗ୍ରନ୍ଥ 'ଗାଳ୍ପିକ ଶାନ୍ତନୁଙ୍କ ଦୃଷ୍ଟିରେ ଚଳନ୍ତି ଠାକୁର' ସୃଷ୍ଟ ।

-ପ୍ରକାଶକ

# ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟଙ୍କ ଦୃଷ୍ଟିରେ
# ଚଳନ୍ତି ଠାକୁର

ଡକ୍ଟର ଚିତ୍ତ ରଂଜନ ପଣ୍ଡା



# ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟଙ୍କ ଦୃଷ୍ଟିରେ ଚଳନ୍ତି ଠାକୁର

**ଡକ୍ଟର ଚିତ୍ତ ରଂଜନ ପଣ୍ଡା**
ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ-୧

ପ୍ରକାଶକ : ବିଜୟିନୀ ପବ୍ଲିକେଶନ୍ସ
ଶଙ୍କରପୁର, ଅରୁଣୋଦୟ ମାର୍କେଟ, କଟକ-୭୫୩୦୧୨

ପ୍ରଥମ ପ୍ରକାଶନ : ୨୦୧୬



ପ୍ରଚ୍ଛଦ : ବିଜୟ କୁମାର ସାହୁ

ଅକ୍ଷରସଜ୍ଜା : ମା' ଗ୍ରାଫିକ୍ସ, ବାଦାମବାଡ଼ି, କଟକ-୧୨

ମୁଦ୍ରଣ : ସଂଗୀତା ପ୍ରିଣ୍ଟର୍ସ, କଟକ

---

Galpika Shantanu Acharyanka Drustire Chalanti Thakura

By
**Dr. Chitta Ranjan Panda**
P.G. Deptt. of Odia
Shailabala Women's College, Cuttack-1

Publisher : **Bijayinee Publications**
Shankarpur, Arunodaya Market, Cuttack - 753012
Phone : 9439241471

First Edition : 2016



Cover Design : Bijay Kumar Sahu

Laser Typeset : Maa Graphics, Badambadi, Cuttack-12

Printed at : Sangeeta Printers, Cuttack

---

Price : ₹ 80

ISBN 978-93-84763-73-2

# ପ୍ରସ୍ତାବନା

ସ୍ୱାଧୀନତା ପରବର୍ତ୍ତୀ କାଳରେ ପ୍ରଥିତ ଓଡ଼ିଆ କଥାକାରମାନଙ୍କ ମଧ୍ୟରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଅନ୍ୟତମ । ଗଳ୍ପ ବ୍ୟତୀତ ଉପନ୍ୟାସ, ଶିଶୁସାହିତ୍ୟ, ଭ୍ରମଣୋପନ୍ୟାସ, ଆତ୍ମଜୀବନୀ ପ୍ରଭୃତି ରଚନା କରି ସେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ଗଳ୍ପ ରଚନା କ୍ଷେତ୍ରରେ ତାଙ୍କର ଅବଦାନ ଅନନ୍ୟ । ଗଳ୍ପ ସୃଷ୍ଟି କଳାରେ ସେ ଯଥାଯଥ ବୁଦ୍ଧି, ବିଚାର ବିନିଯୋଗ କରନ୍ତି । ଖିଆଲୀ ଢଙ୍ଗରେ ତାଙ୍କ ଗପ ପଢ଼ିଲେ ଦୁର୍ବୋଧ ମନେହୁଏ, ମାତ୍ର ମନଯୋଗ ସହକାରେ ପାଠକଲେ ଖୁବ୍ ସୁଖବୋଧ ହୋଇଥାଏ । ଗାଳ୍ପିକଙ୍କ ପ୍ରତୀକ, ବ୍ୟଞ୍ଜନାକୁ ଠିକ୍ ରୂପେ ବୁଝି ନ ପାରିଲେ ତାଙ୍କ ଗଳ୍ପ ଗ୍ରନ୍ଥି ଉନ୍ମୋଚନ କରିବା ଆୟାସସାଧ୍ୟ ହୁଏ । ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ଗଳ୍ପର ଚିତ୍ରଚରିତ୍ର, ଉକ୍ତିପ୍ରତ୍ୟୁକ୍ତି ବେଳେବେଳେ ଅଦ୍ଭୁତ ପରି ଲାଗେ । ହେଲେ ଟିକେ ତଳେଇ ଦେଖିଲେ ତାହା ଆମ ସମାଜର ଦୁର୍ନୀତି, ଅନୀତିକୁ ପଦାରେ ପକାଇଦେଇ ଜନଜୀବନରେ ସୁଧାର ଆଣିବାର କଥାକୁ ନୂଆ ପ୍ରକାରେ ସୂଚାଇ ଦିଏ । ଦୈନନ୍ଦିନ ଜୀବନରେ ଘଟୁଥିବା ତଥା ସମାଜ ଆଖିରେ ହେୟ ବିବେଚିତ ହେଉଥିବା ଘଟଣାବଳୀ ଗାଳ୍ପିକ ଶାନ୍ତନୁଙ୍କ ସୂକ୍ଷ୍ମ ଦୃଷ୍ଟିରେ ହୃଦୟସ୍ପର୍ଶୀ ଓ ମହତ ରୂପ ନେଇଛି । ତାଙ୍କ ସୃଷ୍ଟି ମସ୍ତିଷ୍କ ସହ ହୃଦୟକୁ ଯୋଡ଼ିବାରେ ସକ୍ଷମର କାରଣ ହେଉଛି ସେ କଦାପି ମୂଳରୁ ବିଚ୍ୟୁତ ହୁଅନ୍ତି ନାହିଁ । ଅର୍ଥାତ୍ ଭାରତୀୟ ସମାଜ, ସଂସ୍କୃତି, ପରମ୍ପରା, ବିଶ୍ୱାସ ହେଉଛି ଶାନ୍ତନୁଙ୍କ ଗଳ୍ପ ରଚନାର ମୌଳିକ ଉତ୍ସ । ଶାନ୍ତନୁ ଆଚାର୍ଯ୍ୟଙ୍କ ଅନ୍ୟ ଗଳ୍ପ ସଂକଳନ ତୁଳନାରେ ଚଳନ୍ତି ଠାକୁର ଗ୍ରନ୍ଥରେ ବୌଦ୍ଧିକତାର ସାନ୍ଦ୍ରତା ଏତେ ନିବିଡ଼ ନୁହେଁ, ମାତ୍ର ଏଥିରେ ପ୍ରଥାପରମ୍ପରା, ଚିନ୍ତାଚେତନା ପ୍ରତି ଅଧିକ ଗୁରୁତ୍ୱାରୋପ କରାଯାଇଛି । ଭାରତୀୟ ମୂଲ୍ୟବୋଧର ଉଦ୍‌ଘୋଷକ ଚଳନ୍ତି ଠାକୁର ଗଳ୍ପଗ୍ରନ୍ଥଟି

୧୯୯୩ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମି ପୁରସ୍କାରପ୍ରାପ୍ତ ହୋଇ ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟଙ୍କ ଦକ୍ଷତାକୁ ଜାତୀୟ ସ୍ତରରେ ସ୍ୱୀକୃତି ପ୍ରଦାନ କରିଛି । ୧୯୯୧ ମସିହାରେ ପ୍ରଥମେ ପ୍ରକାଶ ପାଇଥିବା ଏହି ବହିର ଗପଗୁଡ଼ିକ ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟଙ୍କ ବିଶେଷ ଦୃଷ୍ଟିଭଙ୍ଗୀରେ ଚମତ୍କାର ହୋଇପାରିଛି । ସଂକଳନଟି ପୁରସ୍କାର ଲାଭ କରିବା ପରେ ଏହାର ସମୀକ୍ଷା କରିବାର ଆଗ୍ରହରୁ "ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟଙ୍କ ଦୃଷ୍ଟିରେ ଚଳନ୍ତି ଠାକୁର" ଗ୍ରନ୍ଥ ରଚିତ ।

ଉକ୍ତ ସମାଲୋଚନା ପୁସ୍ତକ ବହୁବର୍ଷ ତଳେ ଲେଖା ହୋଇଥିଲେ ମଧ୍ୟ ପ୍ରକାଶ ପାଇବା ନିମନ୍ତେ ଦୀର୍ଘ ସମୟ ବିତିଯାଇଛି । କାରଣ ପ୍ରଥମେ ଜଣେ ପ୍ରକାଶକ ବନ୍ଧୁ ପାଣ୍ଡୁଲିପି ନେଇ ପ୍ରକାଶ କରିବେ ବୋଲି କହି କାର୍ଯ୍ୟବ୍ୟସ୍ତତାର ଆଳରେ ପକାଇ ରଖିଲେ । ଦେଢ଼ ବର୍ଷରୁ ଊର୍ଦ୍ଧ୍ୱ ସମୟ ଅତିବାହିତ ହେଲାପରେ ଦିନେ କହିଲେ–ପାଣ୍ଡୁଲିପିଟି କୋଉଠି ରହିଯାଇଛି, ପାଉନି । ବେଳ ମିଳିଲେ ଖୋଜି ବାହାର କରିଦେବି । ଏତେଦିନ ତ ଗଲାଣି, ଆଉ ଟିକେ ଅପେକ୍ଷା କର । ଆରମାସରେ ଦେଖି କରିଦେବି ।

କିଛି ମାସ ପରେ ପାଣ୍ଡୁଲିପି ପାଇ ଛାପିଦେବାର ପ୍ରତିଶ୍ରୁତି ଦେଲେ । ଆଉ କିଛି ମିଶେଇ ଲେଖିବାର ଅଛି କହି ପାଣ୍ଡୁଲିପିକୁ ତାଙ୍କଠାରୁ ମାଗି ଆଣିଲି । ହେଲେ ପାଣ୍ଡୁଲିପିରେ ବିନ୍ଦୁଟିଏ ମାରିପାରିଲି ନାହିଁ କି ପୂର୍ବୋକ୍ତ ପ୍ରକାଶକ ବା ଅନ୍ୟ କାହାକୁ ପ୍ରକାଶ କରିବା ପାଇଁ ଦେବାକୁ ଇଚ୍ଛା କଲିନି । ଜୀବନ ଜଞ୍ଜାଳ, ଚାକିରି କ୍ଷେତ୍ରରେ ସ୍ଥାନାନ୍ତର ଆଦି ନାନା କାରଣବଶତଃ ଏ ବିଷୟରେ ଆଦୌ ମନ ଦେଇପାରିଲି ନାହିଁ । ଇତିମଧ୍ୟରେ ଗାଳ୍ପିକ ଶାନ୍ତନୁ କୁମାର ଆଚାର୍ଯ୍ୟ ଆହୁରି କିଛି ଲେଖିଛନ୍ତି ଏବଂ ମାନସମ୍ମାନ ମଧ୍ୟ ପାଇଛନ୍ତି । ସେସବୁ ଏହାର ଦ୍ୱିତୀୟ ପରିଚ୍ଛେଦରେ ସ୍ଥାନ ପାଇପାରି ନାହିଁ । ପରିଶେଷରେ ବିଜୟିନୀ ପବ୍ଲିକେଶନ୍‌ର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ଦିଲୀପ କୁମାର ବେଉରା ଯଥାଶୀଘ୍ର ପ୍ରକାଶ କରିଦେବା ନିମନ୍ତେ କଥାଦେଇ କଥା ରଖିଥିବାରୁ ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ଚିତ୍ତରଂଜନ ପଣ୍ଡା

# ସୂଚିପତ୍ର





# ଓଡ଼ିଆ କ୍ଷୁଦ୍ରଗଳ୍ପର ବିକାଶଧାରାରେ ଶାନ୍ତନୁ ଆଚାର୍ଯ୍ୟଙ୍କ ଯୋଗଦାନ

ଗଳ୍ପ ସାହିତ୍ୟର ଏକ ସୁପ୍ରାଚୀନ ଓ ବଳିଷ୍ଠ ପରମ୍ପରା ବିଦ୍ୟମାନ । ଅତୀତର ଲୋକକଥା ଜନତାଙ୍କ ଗଳ୍ପ ଶୁଣିବାର ଅଭୀପ୍‌ସାକୁ ପୂରଣ କରୁଥିଲା । ଜନମାନସର ବିକାଶ ସହିତ ଲୋକଗଳ୍ପର ଇତିହାସ ସଂଶ୍ଳିଷ୍ଟ । ଜନମୁଖରୁ ଏହାର ସୃଷ୍ଟି ଓ ଜନମୁଖରେ ଏହାର ପୁଷ୍ଟି । ଲୋକକଥାର କୌଣସି ନିର୍ଦ୍ଦିଷ୍ଟ ସ୍ରଷ୍ଟା ଦୃଷ୍ଟିଗୋଚର ହୁଏ ନାହିଁ । ଏହାର ଜନକ ଏକ ବା ଏକାଧିକ ଜନତା । ମାନବର ଆଦିମ ପିପାସା ଗଳ୍ପ କଥନ ଓ ଶ୍ରବଣକୁ ଲୋକଗଳ୍ପ ଦୀର୍ଘଦିନ ପର୍ଯ୍ୟନ୍ତ ଚରିତାର୍ଥ କରିଆସିଛି । ଭାରତର ବେଦ, ଉପନିଷଦ, ପୁରାଣ, ଜାତକ କଥା, ପଞ୍ଚତନ୍ତ୍ର, ହିତୋପଦେଶ, କଥାସରିତ ସାଗର, ଆଦିବାସୀ ଗଳ୍ପ ଏବଂ ପୃଥିବୀର ଅନ୍ୟାନ୍ୟ ଦେଶର ଆରବିଆନ୍ ନାଇଟ୍‌ସ, ଦି କାଣ୍ଟରବରି ଟେଲ୍‌ସ, ଏସପ୍‌ସ ଫେବଲସ୍, ଦ ଡେକାମେରନ ପ୍ରଭୃତି ଲୋକ କଥା ଯୁଗ ଯୁଗ ଧରି ଜନମାନସର କାହାଣୀ ତୃଷ୍ଣାକୁ ନିବାରିତ କରିଛି ।

ଊନବିଂଶ ଶତାବ୍ଦୀରେ ଇଉରୋପ ମହାଦେଶରେ ଲୋକଗଳ୍ପ ବିବର୍ତ୍ତିତ ହୋଇ କ୍ଷୁଦ୍ରଗଳ୍ପର ରୂପ ପରିଗ୍ରହଣ କରିଛି । କାରଣ ଏହି ସମୟରେ ମଧ୍ୟଯୁଗୀୟ ସମଷ୍ଟି ଚେତନା ସହିତ ଆଧୁନିକ ଯୁଗର ବ୍ୟକ୍ତି ସଚେତନତାର ସଂଘାତ ଫଳରେ ଏହା ସମ୍ଭବ ହୋଇଛି । ୱାଶିଂଟନ୍ ଇରିଭିଂ ଲିପିଚିତ୍ର/ସ୍କେଚ୍ ଲେଖି କ୍ଷୁଦ୍ରଗଳ୍ପର ଭିତ୍ତି ସ୍ଥାପନ କରିଛନ୍ତି ।[୧] କିନ୍ତୁ ଫ୍ରାନ୍‌ସର ମୋପାଁସା ହେଉଛନ୍ତି ଆଧୁନିକ କ୍ଷୁଦ୍ରଗଳ୍ପର ନବନିର୍ମାତା ।

ତତ୍କାଳୀନ ସମୟରେ ଆମେରିକାର ଏଡ୍‌ଗାର ଏଲେନ୍ ପୋ, ନାଥାନିଏଲ ହଥର୍ଣ୍ଣ, ମେଲଭିଲ୍, ଫ୍ରାନ୍ସର ବାଲ୍‌ଜାକ୍, ଋଷିଆର ଚେକଭ ପ୍ରମୁଖ ଗାଳ୍ପିକମାନେ କ୍ଷୁଦ୍ରଗଳ୍ପ ଗଠନରେ ଅଭିନବତ୍ୱ ପ୍ରଦର୍ଶନ କରିଛନ୍ତି । ପୁନଶ୍ଚ ବ୍ରାଣ୍ଡର ମାଥ୍ୟୁସ୍, ଟି.ଏସ୍. ଇଲିୟଟ୍, ଗ୍ରାହାମ୍ ଗ୍ରୀନ୍, ଆର୍ଥର କ୍ୱେସଲାର, ଜେମସ୍ ଜୟେସ୍, ଫ୍ରୟେଡ୍, ସାର୍ତ୍ରେ, ଫ୍ରାନ୍‌ଜ କାଫ୍‌କା ପ୍ରଭୃତି ପ୍ରଖ୍ୟାତ କଥାକାରମାନଙ୍କ ବୌଦ୍ଧିକ ଚେତନା ଯୋଗୁଁ କ୍ଷୁଦ୍ରଗଳ୍ପର ରଚନାଶୈଳୀ ହୋଇଛି ସମ୍ଭ୍ରାନ୍ତ ଓ ରୁଚିପୂର୍ଣ୍ଣ । କ୍ରମେ କ୍ଷୁଦ୍ରଗଳ୍ପର ରଚନା ପଦ୍ଧତି ସମଗ୍ର ବିଶ୍ୱରେ ସମାଦୃତ ହୋଇଛି ।

ଓଡ଼ିଆ କ୍ଷୁଦ୍ରଗଳ୍ପର ଜନ୍ମ ଉନବିଂଶ ଶତାବ୍ଦୀର ଅନ୍ତିମ ଭାଗରେ । ଏହା ପୂର୍ବରୁ ଓଡ଼ିଶାରେ ସାରଳା ମହାଭାରତ, ଦାଣ୍ଡୀରାମାୟଣ, ରୁଦ୍ରସୁଧାନିଧି, ଚତୁର ବିନୋଦ, ସୋମନାଥ ବ୍ରତ କଥା, ହାସ୍ୟ କଲ୍ଲୋଳ, ଆଦିବାସୀ ଗଳ୍ପ, ମିସ୍‌ନାରୀ ଗଳ୍ପ ପ୍ରଭୃତି ପ୍ରଚଳିତ ଥିଲା । କିନ୍ତୁ ଏସବୁଥିରେ ଯଥାର୍ଥ ଭାବରେ ଆଧୁନିକ କ୍ଷୁଦ୍ରଗଳ୍ପର ଲକ୍ଷଣ ପରିଦୃଷ୍ଟ ହୁଏ ନାହିଁ । ୧୮୯୮ ମସିହାରେ ପ୍ରକାଶିତ ଫକୀରମୋହନ ସେନାପତିଙ୍କ 'ରେବତୀ' ହେଉଛି ପ୍ରଥମ ଓଡ଼ିଆ କ୍ଷୁଦ୍ରଗଳ୍ପ । ଫକୀରମୋହନ ହେଉଛନ୍ତି ଓଡ଼ିଆ କ୍ଷୁଦ୍ରଗଳ୍ପର ଆଦ୍ୟ ସ୍ରଷ୍ଟା । ସେ ୧୮୬୮ ମସିହାରେ 'ଲଛମନିଆ' ନାମକ ଗୋଟିଏ କ୍ଷୁଦ୍ରଗଳ୍ପ 'ବୋଧଦାୟିନୀ' ପତ୍ରିକାରେ ଲେଖିଥିଲେ ବୋଲି ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ ଅଛି । ଏହାର ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । ଯଦି ଏହା ସତ୍ୟ ହୁଏ, ତେବେ ସେ ହେବେ ଭାରତର ପ୍ରଥମ କ୍ଷୁଦ୍ରଗଳ୍ପ ସ୍ରଷ୍ଟା ।[୨]

ଫକୀରମୋହନଙ୍କ ଅନେକ ଗଳ୍ପ ଘଟଣା ପ୍ରଧାନ । କେତେକ ଗଳ୍ପର ଗୋଟିଏ କାହାଣୀ ମଧ୍ୟରେ ଆଉ ଏକ କାହାଣୀ ସୃଷ୍ଟି ହୋଇଛି । ଦୁଇ କାହାଣୀ ଗୋଟିଏ ଭାବକେନ୍ଦ୍ର ଦ୍ୱାରା ପରିଚାଳିତ ହୋଇ ପରିଣତିରେ ଏକ ବଳିଷ୍ଠ ଭାବ ପ୍ରକାଶ ପାଇଛି । ଚରିତ୍ର ଚିତ୍ରଣ କିଛି ଗଳ୍ପରେ ଗୁରୁତ୍ୱଲାଭ କରିଛି । ବର୍ଣ୍ଣନାତ୍ମକ ଶୈଳୀରେ ତାଙ୍କ ଗଳ୍ପଗୁଡ଼ିକ ରଚିତ ହୋଇଥିଲେ ମଧ୍ୟ ସ୍ଥଳବିଶେଷରେ ବ୍ୟଞ୍ଜନାର ପ୍ରୟୋଗ ମଧ୍ୟ ଦେଖିବାକୁ ମିଳେ । ନିପଟ ଓଡ଼ିଆ ଭାଷାର ବ୍ୟବହାରରେ ଓଡ଼ିଶା ମାଟିର କଥା ତାଙ୍କ ଲେଖନୀରେ ଜୀବନ୍ତ ରୂପ ନେଇଛି । ଫକୀରମୋହନଙ୍କ ଗଳ୍ପ ଲୋକପ୍ରିୟ ହେବାର ମୂଳରେ ରହିଛି ହାସ୍ୟରସ । ହାସ୍ୟ, ବ୍ୟଙ୍ଗ ମାଧ୍ୟମରେ ସେ ମଣିଷର

ଅସଲ ଚେହେରାକୁ ଯେମିତି ଦେଖାଇଛନ୍ତି, କରୁଣଭାବକୁ ମଧ୍ୟ ସ୍ୱାଭାବିକ ଭାବେ ବ୍ୟକ୍ତ କରିଛନ୍ତି । କେବଳ ସାହିତ୍ୟ ଦିଗରୁ ନୁହେଁ, ସାମାଜିକ ଦୃଷ୍ଟିରୁ ବିଚାର କଲେ ଫକୀରମୋହନଙ୍କ ଗଳ୍ପ ତତ୍କାଳୀନ ସମୟର ଯଥାର୍ଥ ପ୍ରାଣସ୍ପନ୍ଦନର ବାହକ ।

ପ୍ରଥମ ଓଡ଼ିଆ ଗଳ୍ପ ସଂକଳନ 'ଚିତ୍ର'ର ସ୍ରଷ୍ଟା ଚନ୍ଦ୍ରଶେଖର ନନ୍ଦ ଥିଲେ ଫକୀରମୋହନଙ୍କ ସମୟର ଗାଳ୍ପିକ । ସେ ବି ଓଡ଼ିଆ କ୍ଷୁଦ୍ର ଗଳ୍ପର ପ୍ରଥମ ତାତ୍ତ୍ୱିକ ଆଲୋଚକ । ଗାଳ୍ପିକ ନନ୍ଦ ସାମାଜିକ, ବୈଦିକ, ବୌଦ୍ଧଯୁଗୀୟ, କିମ୍ବଦନ୍ତୀ ଭିତ୍ତିକ ବିଷୟକୁ ନେଇ ଗଳ୍ପ ରଚନା କରିଛନ୍ତି । ସାମାଜିକ ଘଟଣା ଉପରେ ଆଧାରିତ ଗଦା ଡକାଏତ ଗଳ୍ପରେ ଶୋଷିତର ଶୋଷକ ବିରୁଦ୍ଧରେ ପ୍ରତିବାଦ ଓଡ଼ିଆ କ୍ଷୁଦ୍ରଗଳ୍ପ ସାହିତ୍ୟରେ ପ୍ରଥମ କରି ଦେଖିବାକୁ ମିଳେ । ଚନ୍ଦ୍ରଶେଖର ବିଷୟବସ୍ତୁ ନିର୍ବାଚନରେ ନୂତନତା ଆଣିଥିଲେ ମଧ୍ୟ ଗଳ୍ପ ଶିଳ୍ପକଳାରେ ସେମିତି କିଛି ପାରଦର୍ଶିତା ଦେଖାଇ ପାରିନାହାନ୍ତି । ଅତିରିକ୍ତ ପାଣ୍ଡିତ୍ୟପୂର୍ଣ୍ଣ ଭାଷାର ପ୍ରୟୋଗରେ ତାଙ୍କ ଗଳ୍ପଗୁଡ଼ିକ ଭାରାକ୍ରାନ୍ତ ।

ଫକୀରମୋହନ ଓ ଚନ୍ଦ୍ରଶେଖର ଇତିହାସକୁ ନେଇ ଗଳ୍ପ ରଚନାର କେବଳ ମାତ୍ର ପ୍ରୟାସ କରିଥିଲେ । କିନ୍ତୁ ଇତିହାସର ଛାତ୍ର ଦୟାନିଧି ମିଶ୍ର ଏ କ୍ଷେତ୍ରରେ ସଫଳତା ଅର୍ଜନ କରିଥିଲେ । ଇତିହାସର ଶୁଷ୍କ, ରୁକ୍ଷ ଘଟଣାବଳୀ ତାଙ୍କ କଳା ମୂଲ୍ୟରେ ରସସିକ୍ତ ହୋଇ ସାର୍ଥକ ଐତିହାସିକ ଗଳ୍ପ ହୋଇପାରିଥିଲା । ଜାତୀୟତା, ବୀରତ୍ୱ ତାଙ୍କ ଗଳ୍ପରେ ପ୍ରକାଶ ପାଇଥିଲେ ମଧ୍ୟ ରୋମାନ୍‌ସଧର୍ମୀ ପ୍ରେମପ୍ରଣୟର ଅବତାରଣା ମଧ୍ୟ ହୃଦୟସ୍ପର୍ଶୀ ହୋଇଛି । ଗଳ୍ପର ବିଷୟବସ୍ତୁରେ ବିଭାଗୀକରଣ, ରୋମାଣ୍ଟିକ୍ ପ୍ରେମ, ବିଷୟ ଗ୍ରନ୍ଥିର କ୍ରମ ଉନ୍ମୋଚନ, ବୈଚିତ୍ର୍ୟମୟ ଆରମ୍ଭ ତାଙ୍କ ଗଳ୍ପ ସୃଷ୍ଟିର ବିଶେଷତ୍ୱ ।

ଫକୀରମୋହନଙ୍କୁ ଆଦର୍ଶ ରୂପେ ଗ୍ରହଣ କରିଥିବା ଆଉ ଜଣେ ଗାଳ୍ପିକ ହେଉଛନ୍ତି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର । ଫକୀରମୋହନଙ୍କ ପରି ସେ ହାସ୍ୟରସକୁ ଉପଜୀବ୍ୟ କରି ଗଳ୍ପ ରଚନା କରିଛନ୍ତି । ମାତ୍ର ଇଦରଚାନ୍ଦ ଓ ବୁଢ଼ାଶଙ୍ଖାରି ଗଳ୍ପରେ ଗାଳ୍ପିକ କରୁଣ ରସକୁ ପ୍ରାଧାନ୍ୟ ଦେଇଛନ୍ତି । କିମ୍ବଦନ୍ତୀ, ସାମାଜିକ ସମସ୍ୟା ଆଦି ତାଙ୍କ ଗଳ୍ପର କଥାବସ୍ତୁ ହୋଇଛି । ଚନ୍ଦ୍ରଶେଖର ନନ୍ଦ ତାଙ୍କ ଗଦା ଡକାଏତ ଗଳ୍ପରେ

ଶୋଷିତର ଶୋଷକ ବିରୁଦ୍ଧରେ ଯେଉଁ ସ୍ୱର ଉତ୍ତୋଳନ କରିଥିବାର ଦେଖିବାକୁ ମିଳେ, ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଲକ୍ଷ୍ମୀକାନ୍ତଙ୍କ ଅଧିକାର ଗଳ୍ପରେ ବର୍ଣ୍ଣନା ହୋଇଛି । ଏହାର ମୂଳରେ ନିହିତ ଅଛି ଯୌନଜିଘାଂସା । ଧନୀ-ଦରିଦ୍ର, ଛାତ୍ର-ଛାତ୍ରୀ ଆଦି ବିଭିନ୍ନ ବର୍ଗର ଚରିତ୍ର କାନ୍ତକବିଙ୍କ ଗଳ୍ପରେ ଦେଖିବାକୁ ମିଳେ । ତାଙ୍କର କେତେକ ଗଳ୍ପରେ ଯୌନବିକୃତ ମାନସିକତାର ପରିପ୍ରକାଶ ହୋଇଛି । ଲକ୍ଷ୍ମୀକାନ୍ତଙ୍କ ଗଳ୍ପଗୁଡ଼ିକର କଥାବସ୍ତୁ ଗତାନୁଗତିକ ଶୈଳୀରେ ରଚିତ । ଆଲୋଚକ ନଟବର ସାମନ୍ତରାୟଙ୍କ ମତରେ— 'ଲକ୍ଷ୍ମୀକାନ୍ତଙ୍କ ଲିଖିତ ଗଳ୍ପର ବିଷୟବସ୍ତୁରେ ବିଶେଷ କିଛି ନୂତନତା ନାହିଁ ।'[୩] ତଥାପି କେତେକ ଗଳ୍ପ ତାଙ୍କର ଭାବ, ଭାଷା, ଶୈଳୀ ଦୃଷ୍ଟିରୁ ଉଚ୍ଚକୋଟୀର ହୋଇଛି । ଖଣ୍ଡିତ ଜୀବନ, ଗଳ୍ପର ଆରମ୍ଭ ଓ ପରିଣତିରେ ଆକସ୍ମିକତା, ସରଳ ଭାଷା, ବ୍ୟଙ୍ଗବିଦ୍ରୂପ ତାଙ୍କ ଗଳ୍ପ ରଚନାର ବୈଶିଷ୍ଟ୍ୟ ।

୧୯୧୩ ମସିହାରେ ଦିବ୍ୟସିଂହ ପାଣିଗ୍ରାହୀଙ୍କ ପ୍ରଥମ ଗଳ୍ପ 'ପିତୃ ଶିରାଧ' ମୁକୁର ପତ୍ରିକାରେ ପ୍ରକାଶ ପାଇଥିଲା । ମାଳତୀ, ପାନବାଲୀ, ଅମୃତ କଙ୍କଣ, ସାବିତ୍ରୀ ଉପବାସ, ଗୟାଶ୍ରାଦ୍ଧ ଇତ୍ୟାଦି ସତର ଗୋଟି ଗଳ୍ପ ତାଙ୍କ ଲେଖନୀରୁ ଆତ୍ମପ୍ରକାଶ କରିଛି । ଉତ୍କଳୀୟ ପାରିବାରିକ ଓ ସାମାଜିକ ଜୀବନର ବିଭିନ୍ନ ସମସ୍ୟାକୁ ଅବଲମ୍ବନ କରି ସେ ଗଳ୍ପ ରଚନା କରିଛନ୍ତି । ଦିବ୍ୟସିଂହଙ୍କ ଗଳ୍ପଗୁଡ଼ିକ କାହାଣୀଧର୍ମୀ । ବିଶେଷ ଭାବକୁ ନେଇ ସେ ତାଙ୍କ ଗଳ୍ପର ପରିକଳ୍ପନା କରିଛନ୍ତି । ପ୍ରକାଶଭଙ୍ଗୀରେ ନାଟକୀୟତା ଓ ସାବଲୀଳ ଭାଷା ତାଙ୍କ ଗଳ୍ପ ରଚନାଶୈଳୀର ଆଉ ଏକ ବିଶେଷ ଦିଗ ।

ଗାଳ୍ପିକ ବାଙ୍କନିଧି ପଟ୍ଟନାୟକ ଫକୀରମୋହନ ରୀତି ଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ଗଳ୍ପ ରଚନାରେ ତାଙ୍କ ନିଜସ୍ୱ ଶୈଳୀ ପରିଲକ୍ଷିତ ହୁଏ । ସାମାଜିକ ସମସ୍ୟାକୁ ନେଇ ତାଙ୍କ ଗଳ୍ପ ରଚିତ । ଉତ୍କଟ ଯୌତୁକପ୍ରଥା, ପୋଷ୍ୟପୁତ୍ର ପ୍ରତି ଅତ୍ୟାଚାର, ଭଣଜା ପ୍ରତି ମାଇଁରଂ ବୀତସ୍ପୃହ ଭାବ, ନବ୍ୟଶିକ୍ଷିତ ଯୁବକମାନେ ନିଜପାଇଁ କନ୍ୟା ପସନ୍ଦ କରିବାରେ ସମାଜର ପ୍ରତିବନ୍ଧକ, ଚୋରି ଓ ତା'ର ବିଚାରଧାରା, ଭଣ୍ଡବାବାଜିଙ୍କ ଲମ୍ପଟତା ଇତ୍ୟାଦି ଘଟଣା ହେଉଛି ଗାଳ୍ପିକ ବାଙ୍କନିଧିଙ୍କ କଥାବସ୍ତୁ । ନୈତିକ ଓ ମାନବିକତାକୁ ସେ ସର୍ବଦା ଆଖି ଆଗରେ ରଖି ଗଳ୍ପ

ରଚନା କରିଛନ୍ତି । ସ୍ୱାଭାବିକ ବର୍ଣ୍ଣନା ଓ ସାବଲୀଳ ଭାଷା ପ୍ରୟୋଗ ତାଙ୍କ ସୃଷ୍ଟିକୁ ସୁଖପାଠ୍ୟ କରିଛି ।

ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, କବିତା ଲେଖିବା କ୍ଷେତ୍ରରେ ଜଣେ ଯଶସ୍ୱୀ ସାହିତ୍ୟିକ ହେଲେ ଚିନ୍ତାମଣି ମହାନ୍ତି । ସେ ରଚନା କରିଥିବା ଗଳ୍ପଗୁଡ଼ିକ 'ନନ୍ଦନବନ' ଓ 'ପଞ୍ଚବଟୀ' ଗଳ୍ପସଂକଳରେ ସ୍ଥାନ ପାଇଛି । ଗ୍ରାମୀଣ ସମାଜରେ ସେବା ଓ ସଂସ୍କାର, ବନ୍ଧ୍ୟା ଜୀବନରେ ସନ୍ତାନପ୍ରାପ୍ତି ନିମନ୍ତେ ଅକୁହା ବେଦନା, ଈଶ୍ୱର ଓ ନାରୀ ଜାତି ପ୍ରତି ସମ୍ମାନବୋଧ, ବାଲ୍ୟବିଧବା ପ୍ରତି ଅତ୍ୟାଚାର ପ୍ରଭୃତି ପଲ୍ଲୀ ଜନତାର ସମସ୍ୟା ତାଙ୍କ ଗଳ୍ପରେ ସ୍ଥାନ ପାଇଛି । ନୀତି, ଆଦର୍ଶ, ସଂସ୍କାର ପ୍ରତି ସେ ଗୁରୁତ୍ୱ ପ୍ରଦାନ କରିଛନ୍ତି । କାହାଣୀଧର୍ମୀ ଗଳ୍ପ ସୃଷ୍ଟିକୁ ସେ ଆପଣେଇ ନେଇଛନ୍ତି । ତାଙ୍କ ଗଳ୍ପଗୁଡ଼ିକ ମଧ ଦୀର୍ଘ ରଚନାଧର୍ମୀ । କେତେକ ଗଳ୍ପରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ସ୍ଥାନ ପାଇଛି । ପଣ୍ଡିତ ଓ ସାଧାରଣ ଜନତାଙ୍କ ଭାଷାକୁ ଗଳ୍ପ ସୃଷ୍ଟିରେ ସେ ବ୍ୟବହାର କରିଛନ୍ତି ।

ଓଡ଼ିଆ ଗଳ୍ପର ପ୍ରାଥମିକ ପର୍ଯ୍ୟାୟରେ ନନ୍ଦକିଶୋର ବଳ, ସୁଧାକର ପଟ୍ଟନାୟକ, କାମପାଳ ମିଶ୍ର, ରେବା ରାୟ, ତାରିଣୀ ଚରଣ ରଥ ଆଦି ଗଳ୍ପସ୍ରଷ୍ଟାମାନେ ମଧ ଲେଖନୀ ଚାଳନା କରିଥିଲେ । ଉତ୍କଳୀୟ ସମାଜ ଜୀବନ, ଇତିହାସ, କିମ୍ବଦନ୍ତୀକୁ ନେଇ ଗଳ୍ପର ବିଷୟବସ୍ତୁ ପରିକଳ୍ପିତ ହୋଇଥିଲା । ବାସ୍ତବତା ଅପେକ୍ଷା ଆଦର୍ଶବାଦ, ଭାଗ୍ୟ ଓ ଭଗବାନଙ୍କ ଗୁରୁତ୍ୱ ଗଳ୍ପଗୁଡ଼ିକର ପରିଣତିରେ ପ୍ରାଧାନ୍ୟ ଲାଭ କରିଥିଲା । କୌଣସି ଘଟଣାର ଅନ୍ତଃରୂପ ପରିବର୍ତ୍ତେ ବହିଃରୂପ ଗଳ୍ପରେ ବିଶେଷଭାବେ ସ୍ଥାନ ପାଇଥିଲା । ପାଶ୍ଚାତ୍ୟ ଶିକ୍ଷା ସଭ୍ୟତାର ଅଗ୍ରଗତି, ନୂତନ ଚିନ୍ତାଚେତନାର ଉତ୍ପତ୍ତି, ସହରୀ ଜୀବନଶୈଳୀ ପ୍ରତି ଆଗ୍ରହ କାରଣରୁ ପରବର୍ତ୍ତୀ କାଳରେ କ୍ଷୁଦ୍ରଗଳ୍ପ ଶିଳ୍ପ କଳାର କ୍ରମ ଉନ୍ନତି ହୋଇଛି ।

ସତ୍ୟବାଦୀ ଯୁଗର ଜଣେ ପ୍ରଭାବଶାଳୀ ଗାଳ୍ପିକ ହେଉଛନ୍ତି ଗୋଦାବରୀଶ ମିଶ୍ର । ମିଳନ, ପାଣ୍ଡୁମିଶ୍ରେ, ତୋଳାକନ୍ୟା,ବନ୍ଦୀ, ପାଷାଣର ଭାଷା, ରିକ୍ସାବାଲା, ରାଜଭାଗ, ସାନ୍ତ୍ୱନା ଆଦି ସତେଇଶି ଗୋଟି ଗଳ୍ପର ସେ ସ୍ରଷ୍ଟା । ସାମାଜିକ ସଂସ୍କାର, ପାରିବାରିକ ସମସ୍ୟା, ପ୍ରଶାସନିକ ଓ ରାଜନୈତିକ ବ୍ୟକ୍ତିଙ୍କ କଳୁଷିତ ଚରିତ୍ର,

ପ୍ରେମ-ପ୍ରଣୟକୁ ଆଧାର କରି ତାଙ୍କ ଗଳ୍ପଗୁଡ଼ିକ ସୃଷ୍ଟ । ଗୋଦାବରୀଶ ମିଶ୍ରଙ୍କ ସୃଷ୍ଟିରେ ଘଟଣା ବା ପ୍ଲଟ୍ ଗୁରୁତ୍ୱ ଲାଭ କରିଥିଲେ ବି କେତେକ ଗଳ୍ପ ଚରିତ୍ରକୁ ନେଇ ମଧ୍ୟ ଗତିଶୀଳ ହୋଇଛି । ନୀଚଶ୍ରେଣୀୟ ଚରିତ୍ର ପ୍ରତି ସେ ଧ୍ୟାନଶୀଳ ହୋଇଛନ୍ତି । ନାରୀ ନିର୍ଯାତନାର କଥା ତାଙ୍କ ଗଳ୍ପରେ ବେଶି କୁହାଯାଇଛି । ଖଣ୍ଡିତ ପରିବର୍ତ୍ତେ ଦୀର୍ଘଜୀବନର ବର୍ଣ୍ଣନା ହେତୁ ତାଙ୍କ ଗଳ୍ପର କଳେବର ଉପନ୍ୟାସ ପରି ବୃହତ । ଫକୀରମୋହନଙ୍କ ଉପସ୍ଥାପନା କୌଶଳ ଓ ରଚନାଶୈଳୀ ଦ୍ୱାରା ଗୋଦାବରୀଶ ମିଶ୍ର ପ୍ରଭାବିତ ହେଲେ ମଧ୍ୟ ମାନବିକ ସମ୍ବେଦନଶୀଳତା, ସାମାଜିକ ଓ ରାଜନୈତିକ ସଚେତନତା ତାଙ୍କ ଗଳ୍ପରାଜିରେ ପ୍ରକାଶ ପାଇଛି । ପାତ୍ର ଉପଯୋଗୀ ଭାଷା, ଧ୍ୱନ୍ୟାତ୍ମକ ଶବ୍ଦ ବିନ୍ୟାସ, ଉପମା ପ୍ରୟୋଗ, ନାଟକୀୟ ସଂଳାପ, ପ୍ରବନ୍ଧଶୈଳୀ ମିଶ୍ରଙ୍କ ଗଳ୍ପରୀତିର ପରିଚାୟକ ।

୧୯୧୯ ମସିହାରେ ବାଣୀ ପତ୍ରିକାରେ ପ୍ରକାଶିତ 'ପରିମଳ' ଗଳ୍ପରୁ ଗୋଦାବରୀଶ ମହାପାତ୍ରଙ୍କ ଗାଳ୍ପିକ ଜୀବନର ଶୁଭାରମ୍ଭ ହୋଇଛି । ମେଲାଜିହ, ଭାଇ, ମାଗୁଣିର ଶଗଡ଼, ଈଶ୍ୱରଙ୍କ ପାଖକୁ ଚିଠି, ମୁଁ ଦିନେ ମନ୍ତ୍ରୀ ଥିଲି, ନୀଳମାଷ୍ଟ୍ରାଣୀ, ବିଖ୍ୟାତ କଟକରୁ ଅଖ୍ୟାତ ପଲ୍ଲୀ, ଜାତିର ଧକ୍‌କା ପ୍ରଭୃତି ଗଳ୍ପରୁ ତାଙ୍କ ଗାଳ୍ପିକ ପ୍ରତିଭାର ପରିଚୟ ମିଳେ । ମହାପାତ୍ରଙ୍କ ଗଳ୍ପରେ ସାହୁକାର, ଜମିଦାର, କଣ୍ଟ୍ରାକ୍ଟର, ମନ୍ତ୍ରୀ, ସରକାରୀ ଉଚ୍ଚ କର୍ମଚାରୀଙ୍କ ଅନ୍ୟାୟ, ଅତ୍ୟାଚାର ଓ ସାଧାରଣ ଜନତାଙ୍କ ଦୁଃଖ ଦୁର୍ବିପାକ ଘଟଣା ବର୍ଣ୍ଣନା କରାଯାଇଛି । ଓଡ଼ିଶାର ସାମାଜିକ, ରାଜନୈତିକ, ଆର୍ଥନୀତିକ, ସାଂସ୍କୃତିକ, ଐତିହାସିକ ସମସ୍ୟାକୁ ନେଇ ତାଙ୍କ ସୃଷ୍ଟି ହୋଇଛି ମୁଖର । ସେ ପଲ୍ଲୀ ଜନଜୀବନର ଜଣେ ବିଶିଷ୍ଟ ରୂପକାର । ସମାଲୋଚକ ଗୋପାଳ ଚନ୍ଦ୍ର ମିଶ୍ର ଗାଳ୍ପିକ ମହାପାତ୍ରଙ୍କ ସଂପର୍କରେ କହନ୍ତି– 'ତାଙ୍କ ଗଳ୍ପଗୁଡ଼ିକର ବୈଶିଷ୍ଟ୍ୟ ହେଉଛି ଗ୍ରାମ୍ୟ ପୃଷ୍ଠଭୂମି; ଘଟଣା ଓ କଥାବସ୍ତୁର ସଂଯୋଜିତ ଏକତା, ପୁନଶ୍ଚ କାବ୍ୟସୁଲଭ ଆବେଗ ପ୍ରଧାନ ପ୍ରକାଶଭଙ୍ଗୀ ଏବଂ ଭାଷାର ସାବଲୀଳତା ।'[୪] ଫକୀରମୋହନଙ୍କ ପରି ପଲ୍ଲୀ ଜନତାର ଅସହାୟତା ତାଙ୍କ ଗଳ୍ପରେ ପ୍ରକାଶ ପାଇଛି ଏବଂ ଭାଗ୍ୟ ଭଗବାନ, ଆଦର୍ଶବାଦକୁ ସେ ଗୁରୁତ୍ୱ ଦେଇଛନ୍ତି । ମାଗୁଣିର ଶଗଡ଼ ଗଳ୍ପରେ ଗ୍ରାମୀଣ ଜନତାର କରୁଣବିଳାପ ପ୍ରତିଫଳିତ । ତାଙ୍କର କେତେକ ଗଳ୍ପ ଘଟଣା ପ୍ରଧାନ ହୋଇଥିବାବେଳେ ଅନ୍ୟ କେତେକ ଚରିତ୍ର ପ୍ରଧାନ । ଗଳ୍ପ ଲେଖିବାର

ଶୈଳୀକୁ ସେ ତାଙ୍କ ଦୈନନ୍ଦିନ ଜୀବନାନୁଭୂତିରୁ ସଂଗ୍ରହ କରି ଗଳ୍ପର କଳାମୂଲ୍ୟ ପ୍ରଦାନ କରିଛନ୍ତି । ସେ କେତେକ ଗଳ୍ପରେ କାହାଣୀଧର୍ମୀ ଶୈଳୀକୁ ଅବଲମ୍ବନ କରିବାର ଦେଖାଯାଏ । ନାଟକୀୟ ଉତ୍କଣ୍ଠା, ଆବେଗମୟ ଭାଷା, ବ୍ୟଙ୍ଗବିଦ୍ରୂପର ଶାଣିତ ଭାବଧାରା, ମନସ୍ତାତ୍ତ୍ୱିକ ବର୍ଣ୍ଣନା, ମାନବିକ ସମ୍ବେଦନା, ସଂସ୍କାର ପ୍ରବଣତା ତାଙ୍କ ସୃଷ୍ଟିରେ ପରିଲକ୍ଷିତ ହୁଏ ।

ସବୁଜ ଯୁଗର ଲୋକପ୍ରିୟ ଗାଳ୍ପିକ ହେଉଛନ୍ତି କାଳିନ୍ଦୀ ଚରଣ ପାଣିଗ୍ରାହୀ । ତାଙ୍କ ଗଳ୍ପଗୁଡ଼ିକ ଦ୍ୱାଦଶୀ, ସାଗରିକା, ମୋ କଥାଟି ସରିନାହିଁ, ରାଶିଫଳ, ଶେଷରଶ୍ମି ସଂକଳନରେ ଗ୍ରଥିତ ହୋଇଛି । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶାର ସାମାଜିକ, ରାଜନୈତିକ ଓ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଦେବାଳିଆ ଅର୍ଥନୀତି ସମସ୍ୟାକୁ ଅବଲମ୍ବନ କରି ସେ ଗଳ୍ପ ସୃଷ୍ଟି କରିଛନ୍ତି । ତାଙ୍କ ଗଳ୍ପରେ ଜୀବନଧର୍ମୀ ଚିନ୍ତାଧାରା ପ୍ରକାଶ ପାଇଛି । ବ୍ୟକ୍ତି ଓ ସମାଜକୈନ୍ଦ୍ରିକ ସମସ୍ୟାକୁ ନେଇ ସେ ଲେଖନୀ ଚାଳନା କରିଛନ୍ତି । ରୋମାଣ୍ଟିକ୍ କବି କାଳିନ୍ଦୀଙ୍କ ଗଳ୍ପ ସୃଷ୍ଟିରେ କେବଳ ପ୍ରେମପ୍ରଣୟ ପ୍ରକାଶ ପାଇନାହିଁ; ଅଧିକନ୍ତୁ ଧୂଳିମାଟି ମଣିଷର କଥା କୁହାଯାଇଛି । ଗାଉଁଲି ମଣିଷଙ୍କର ସୁଖ-ଦୁଃଖ, ହସ-କାନ୍ଦ, ଗ୍ରାମୀଣ ପରିବେଶ ତାଙ୍କ ଗଳ୍ପରେ ବର୍ଣ୍ଣିତ । ବିଟ୍‌ଘର ଓ ରେଳଗାଡ଼ି, ରୁଦ୍ରାକ୍ଷ, ହୃଦୟ ଗଳ୍ପରୁ କାଳିନ୍ଦୀ ଚରଣଙ୍କର ମଣିଷ ପ୍ରତି ଦରଦଭାବ ପ୍ରକଟିତ ହୋଇଛି । ମାଂସର ବିଳାପ, ସାପୁଆ ଆଦି କେତେକ ଗଳ୍ପରେ ମାନବେତର ଚରିତ୍ର ମାଧ୍ୟମରେ ମାନବିକ ବ୍ୟକ୍ତିସତ୍ତା ପ୍ରକାଶ ପାଇଛି । କାଳିନ୍ଦୀ ଚରଣ ମୁଖ୍ୟ ଘଟଣାର ଖଣ୍ଡିତାଂଶକୁ ନେଇ ଗଳ୍ପ ରଚନା କରିଛନ୍ତି । ଖଣ୍ଡିତ ଜୀବନ ମଧ୍ୟ ଦେଇ ଅଖଣ୍ଡ ଜୀବନର ସନ୍ଧାନ କରିବା ହେଉଛି ତାଙ୍କ ଗଳ୍ପ ରଚନାର ଉଦ୍ଦେଶ୍ୟ । ତାଙ୍କ ମତରେ– 'ଅସଲ କାହାଣୀ ସବୁବେଳେ ଦରଖଣ୍ଡିଆ, ଭଙ୍ଗା– ସବୁବେଳେ ତାହା ଅଧା ରହିଯାଏ । ତାକୁଇ ଆମେ କହୁ ଅସରନ୍ତି ।'[୬] ନାଟକୀୟ ପ୍ରକାଶଭଙ୍ଗୀ, ବ୍ୟଞ୍ଜନାତ୍ମକ ଶୈଳୀ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ଉତ୍କଣ୍ଠା ବିଜଡ଼ିତ ପରିଣତି, ସାବଲୀଳ ବର୍ଣ୍ଣନା ତାଙ୍କ ଗଳ୍ପରେ ପରିଦୃଷ୍ଟ ହୁଏ ।

ଓଡ଼ିଆ ଗଳ୍ପ ସାହିତ୍ୟରେ ଅନନ୍ତ ପ୍ରସାଦ ପଣ୍ଡା ବେଶ୍ ପରିଚିତ ନାମ । ସେ ଗଳ୍ପ ବ୍ୟତୀତ ଉପନ୍ୟାସ, ଏକାଙ୍କିକା, କବିତା, ପ୍ରବନ୍ଧ, ଭ୍ରମଣ କାହାଣୀ ପ୍ରଭୃତି

ରଚନା କରିଛନ୍ତି । ସଭ୍ୟତାର ତଳେ, ମନର ଭୂତ, ବାରମଜା, ନୈଶସୁନ୍ଦରୀ ଗଳ୍ପଗ୍ରନ୍ଥଗୁଡ଼ିକ ଗାଳ୍ପିକ ଅନନ୍ତ ପ୍ରସାଦଙ୍କ ସ୍ୱାକ୍ଷର ବହନ କରେ । 'ଉତ୍କଳର କ୍ଷୁଦ୍ରଗଳ୍ପର ଜନକ କୁଳବୃଦ୍ଧ ଫକୀରମୋହନ ସେନାପତିଙ୍କ ପରେ କ୍ଷୁଦ୍ରଗଳ୍ପର ଚାହିଦା ପାଠକ ସମାଜରେ ଯଥେଷ୍ଟ ବଢ଼ିଯାଇଥାଏ; କିନ୍ତୁ ଲେଖା ବେଶୀ ନ ଥାଏ । ସେତେବେଳେ ଯେଉଁମାନେ କ୍ଷୁଦ୍ରଗଳ୍ପ ରଚନା କରିବା ପାଇଁ ଆଗଭର ହୋଇ ବାହାରିପଡ଼ିଲେ; ସେଥିମଧ୍ୟରୁ ମୁଁ ଥିଲି ଅଗ୍ରଣୀ ।'[୬] ସ୍ୱାଧୀନତା ପୂର୍ବ ଓ ପରବର୍ତ୍ତୀ ଦେଶର ରାଜନୀତିକ, ସାମାଜିକ ଓ ଆର୍ଥନୀତିକ ଘଟଣାକୁ ଆଧାର କରି ସେ ଗଳ୍ପ ସୃଷ୍ଟି କରିଛନ୍ତି । ସାମାଜିକ ଆଦର୍ଶ ପ୍ରଚାରକୁ ଗୁରୁତ୍ୱ ଦେଇଥିବାରୁ ତାଙ୍କ ଗଳ୍ପର କେତେକ ସ୍ଥଳରେ କଳାମୂଲ୍ୟ ହ୍ରାସ ହୋଇଛି । ଗଳ୍ପ ରଚନାରେ ସେ ଫକୀରମୋହନଙ୍କୁ ନିଜର ଆଦର୍ଶ ରୂପେ ବରି ନେଇଥିଲେ । ଏ ସଂପର୍କରେ ତାଙ୍କର ଉକ୍ତି ହେଲା– 'କହିବା ନିଷ୍ପ୍ରୟୋଜନ ଯେ ମୁଁ ପ୍ରଥମେ ମୋର ଗଳ୍ପ ଲେଖାର ଶୈଳୀ ଗ୍ରହଣ କରିଥିଲି, ଗଳ୍ପ ସାହିତ୍ୟର ଆଦିସ୍ରଷ୍ଟା ଫକୀରମୋହନଙ୍କ ଲେଖାରୁ; କିନ୍ତୁ ମୋର ଗଳ୍ପଗୁଡ଼ିକର ବିଷୟବସ୍ତୁ ମୁଁ ସଂଗ୍ରହ କରିଥିଲି ମୋର ପ୍ରତ୍ୟକ୍ଷୀଭୂତ ବା ଅନୁଭୂତି ଲବ୍ଧ କର୍ମ ଜୀବନର ଅଭିଜ୍ଞତାରୁ । ମୋର ନାୟକ ନାୟିକାମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ସମାଜର ଅତି ନିମ୍ନସ୍ତରର ଅବହେଳିତ, ନିଷ୍ପେଷିତ ଓ ନିପୀଡ଼ିତ ଶ୍ରେଣୀର ଲୋକ ।'[୭] କୁଲି, ଶ୍ରମିକଙ୍କ ପରି ସାଧାରଣ ଲୋକର ଦୁଃଖଯନ୍ତ୍ରଣା, ଅଭାବ କଷଣକୁ ସେ ତାଙ୍କ ସୃଷ୍ଟିରେ ସ୍ପଷ୍ଟରୂପେ ଚିତ୍ରଣ କରିଛନ୍ତି । ଗାଳ୍ପିକ ଅନନ୍ତ ପ୍ରସାଦଙ୍କ ଗଳ୍ପ କାହାଣୀଧର୍ମୀ । ଲୌକିକ ଭାଷା, ସ୍ୱାଭାବିକ ବର୍ଣ୍ଣନା, ଖଣ୍ଡିତ ଜୀବନ ମଧ୍ୟଦେଇ ଅଖଣ୍ଡ ଜୀବନର ବ୍ୟଞ୍ଜନା, ଆରମ୍ଭ ଓ ପରିଣତିରେ ନାଟକୀୟତା ତାଙ୍କ ଗଳ୍ପ ରଚନାରେ ପ୍ରୟୋଗ ହୋଇଛି ।

ପ୍ରଗତିବାଦୀ ଯୁଗର ଜଣେ ପ୍ରମୁଖ ଗାଳ୍ପିକ ହେଲେ ଭଗବତୀ ଚରଣ ପାଣିଗ୍ରାହୀ । ଜଙ୍ଗଲି, ଜୀବନର ସମାଧି, ମିଶ୍ରଙ୍କ କୋପ, ମୀମାଂସା, ଝଡ଼, ହାତୁଡ଼ି ଓ ଦା', ଶିକାର ଇତ୍ୟାଦି ବାରଗୋଟି ଗଳ୍ପର ସେ ରଚୟିତା । ୧୯୨୯ ମସିହାରେ ପ୍ରକାଶିତ ଜଙ୍ଗଲି ଗଳ୍ପରେ ଫ୍ରୟେଡୀୟ ଯୌନଚେତନା, ମନସ୍ତାତ୍ତ୍ୱିକ ବର୍ଣ୍ଣନା ପ୍ରକାଶ ପାଇଛି । ଜୀବନର ସମାଧି ଓ ଅନ୍ୟ କେତେକ ଗଳ୍ପରେ ଅବଚେତନ ମନର ଅବସ୍ଥା ବିଶ୍ଳେଷଣ ହୋଇଛି । ଶିକାର, ହାତୁଡ଼ି ଓ ଦା' ଗଳ୍ପରେ ସେ ସାମ୍ୟବାଦ

ଚିନ୍ତାଧାରାର ପ୍ରବର୍ତ୍ତନ ପାଇଁ ପ୍ରୟାସ କରିଛନ୍ତି । ଓଡ଼ିଆ ଗଳ୍ପ ସାହିତ୍ୟରେ ସାମ୍ୟବାଦର ଅନୁପ୍ରବେଶ ନିମନ୍ତେ ଏହା ବିଶେଷ ପ୍ରୋତ୍ସାହନ ଯୋଗାଇଛି । ଭଗବତୀ ଅତ୍ୟାଚାରିତ ମଣିଷକୁ ଅତ୍ୟାଚାରୀ ବିରୁଦ୍ଧରେ ପ୍ରତିବାଦ କରିବାର ଯେଉଁ ସାହସ ଦେଇଛନ୍ତି, ତାହା ତାଙ୍କ ପୂର୍ବୋକ୍ତ ଗାଳ୍ପିକମାନଙ୍କ ସୃଷ୍ଟିରେ ଏତେ ମାତ୍ରାରେ ତୀବ୍ରତର ନ ଥିଲା । ନିମ୍ନ ଓ ନିମ୍ନମଧ୍ୟବିତ୍ତ ଶ୍ରେଣୀୟ ବ୍ୟକ୍ତି ତାଙ୍କ ଗଳ୍ପର ଚରିତ୍ର । ଶାଣିତ ଓ ଅର୍ଥପୂର୍ଣ୍ଣ ଭାଷା, ପରିଚ୍ଛନ୍ନ ଆଭିମୁଖ୍ୟ, ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ, ସାମ୍ୟବାଦୀ ଚିନ୍ତାଧାରା ତାଙ୍କୁ ବିଶିଷ୍ଟ କଥାଶିଳ୍ପୀର ମାନ୍ୟତା ପ୍ରଦାନ କରିଛି ।

କାବ୍ୟ ସାହିତ୍ୟ ପରି ଗଳ୍ପ ସାହିତ୍ୟରେ ସଚ୍ଚିଦାନନ୍ଦ ରାଉତରାୟଙ୍କ ଅବଦାନ ଉଲ୍ଲେଖନୀୟ । ୧୯୩୩ ମସିହାରେ ଯୁଗବୀଣାରେ ତାଙ୍କର ପ୍ରଥମ ଗଳ୍ପ ବିସର୍ଜନ ପ୍ରକାଶ ପାଇଥିଲା । ଏହାପରେ ଅସ୍ତରାଗ, ରିକ୍ସାବାଲା, ତୃଣ, ଆଙ୍ଗୁଠି, ମଶାଣିର ଫୁଲ, ଅନ୍ଧାରୁଆ, ରଜାପୁଅ, ମଲାକଇଁ, ମାଟିରତାଜ, ଢାଗିରି, ହାତ ପ୍ରଭୃତି ଗଳ୍ପ ସେ ରଚନା କରିଛନ୍ତି । ଜମିଦାର, ସାହୁକାର, ପୁଞ୍ଜିପତି, ଜନନେତା ଆଦି ଧନୀ ଓ ପ୍ରତିପତ୍ତିଶାଳୀ ବ୍ୟକ୍ତିଙ୍କ ଅନ୍ୟାୟ, ଅତ୍ୟାଚାର ଏବଂ ସାଧାରଣ କୃଷକ, ଶ୍ରମିକ, କର୍ମଜୀବୀମାନଙ୍କର ଦୁଃଖଯନ୍ତ୍ରଣା ତାଙ୍କ ଗଳ୍ପଗୁଡ଼ିକର ମୁଖ୍ୟ ବିଷୟବସ୍ତୁ । ଏତଦ୍‌ବ୍ୟତୀତ ପ୍ରେମପ୍ରଣୟ, କୁସଂସ୍କାର, ଅନ୍ଧବିଶ୍ୱାସ, ଆଧୁନିକ ସଭ୍ୟତାର କୁପରିଣାମ ଭଳି ଗ୍ରାମ୍ୟ ଓ ସହରୀ ଜୀବନର ବିଭିନ୍ନ ଦିଗକୁ ଗଳ୍ପରେ ସେ ଅବତାରଣା କରିଛନ୍ତି । ଭଗବତୀ ରଚନାରେ ଯେଉଁ ଅସ୍ପଷ୍ଟ ମାର୍କ୍‌ସବାଦର ସ୍ୱର ଉଠିଥିଲା, ସଚ୍ଚି ରାଉତରାୟଙ୍କ ଲେଖାରେ ତାହା ସ୍ପଷ୍ଟ ହୋଇଥିଲା । ତାଙ୍କର ଆଦ୍ୟ ଅର୍ଘ୍ୟ ବିସର୍ଜନ ଗଳ୍ପରେ ଦରିଦ୍ର, ନୀଚ ଜାତିର ନାରୀ ପ୍ରତି ଧନଶାଳୀ ବ୍ୟକ୍ତିର ଅତ୍ୟାଚାର ବର୍ଣ୍ଣନା ହୋଇଛି । ଅତ୍ୟାଚରର ଶିକାର ହୋଇଥିବା ନାରୀର ପ୍ରତିକ୍ରିୟାକୁ ବି ଗାଳ୍ପିକ ପ୍ରକାଶ କରିଛନ୍ତି । ସାମ୍ୟବାଦ, ବାସ୍ତବବାଦ, ଦାର୍ଶନିକ ଚିନ୍ତା, ମନସ୍ତତ୍ତ୍ୱ, ମାନବିକ ସମ୍ବେଦନଶୀଳତା, ଅସହାୟତା ତାଙ୍କ ରଚନାରେ ପ୍ରକଟିତ ହୋଇଛି । ନିର୍ଦ୍ଦିଷ୍ଟ ମାନସିକ ଭାବକୁ ନେଇ ସେ ଗଳ୍ପ ରଚନା କରିଛନ୍ତି, ଯାହା ଓଡ଼ିଆ ଗଳ୍ପ ସାହିତ୍ୟକୁ ଗତାନୁଗତିକ କାହାଣୀମୂଳକ ଓ ବର୍ଣ୍ଣନାବହୁଳ ରଚନାଶୈଳୀରୁ ମୁକ୍ତି ଦେଇଛି । ପରିବର୍ତ୍ତନଶୀଳ ସାମାଜିକ ମୂଲ୍ୟବୋଧକୁ ସେ ତାଙ୍କ ଗଳ୍ପରେ ସ୍ୱାଗତ ଜଣାଇଛନ୍ତି । ତାଙ୍କ ମତରେ– 'ଇତିହାସର ଏକ ବିଶେଷ ପର୍ଯ୍ୟାୟରେ ଯେଉଁ ଆଦର୍ଶ ବା

ମୂଲ୍ୟବୋଧ ସତ୍ୟ ବୋଲି ଗୃହୀତ ହୋଇଥାଏ, ପରେ ପରିବର୍ତ୍ତିତ ସମାଜ ବ୍ୟବସ୍ଥାରେ ତା'ର ପରିମାଣାତ୍ମକ ଓ ଗୁଣାତ୍ମକ ପରିବର୍ତ୍ତନ ଘଟିଥାଏ । ଅତୀତରୁ ବହୁ ଅନୁଷ୍ଠାନ ଓ ଚଳଣିର ମୂଲ୍ୟ ପରିବର୍ତ୍ତନ ଯୋଗୁଁ ପରବର୍ତ୍ତୀ ସମାଜ ବ୍ୟବସ୍ଥାରେ କେବଳ ସ୍ମୃତି ଓ ରୂପାନ୍ତର ମାଧ୍ୟମରେ ହିଁ ତିଷ୍ଠି ରହିବାର ଦେଖାଯାଏ । ମଣିଷର ବସ୍ତୁଜଗତ ସହିତ ତା'ର ଭାବଜଗତର ଯେଉଁ ଦ୍ୱନ୍ଦ୍ୱ-ସମନ୍ୱୟର ସଂପର୍କ ବର୍ତ୍ତମାନ, ତାହା ହିଁ ତା'ର ମୂଲ୍ୟବୋଧଗୁଡ଼ିକୁ ଜନ୍ମ ଦେଇଥାଏ । ତେଣୁ ଆଜି ଯାହା ଅଖଣ୍ଡ ସତ୍ୟ ରୂପେ ସ୍ୱୀକୃତ, ଭବିଷ୍ୟତରେ ତାହ ଅର୍ଦ୍ଧସତ୍ୟ ବା ଅସତ୍ୟରେ ପର୍ଯ୍ୟବେଶିତ ହୋଇଥାଏ ।'[୮] ବ୍ୟକ୍ତି ଓ ସମାଜ ମଣିଷର ଚିନ୍ତା ଚେତନା ମଧ୍ୟରେ ଦେଖାଦେଇଥିବା ପାର୍ଥକ୍ୟ ଓ ସମନ୍ୱୟକୁ ଆଧାର କରି ତାଙ୍କ ଗଳ୍ପର ଭାବବସ୍ତୁ କଳ୍ପିତ । ବାସ୍ତବଭାଷା, ବ୍ୟଞ୍ଜନାତ୍ମକ ଶୈଳୀ, ନାଟକୀୟ ଉତ୍କଣ୍ଠା ସଚ୍ଚି ରାଉତରାୟଙ୍କ ଗଳ୍ପକୁ ରୁଚିଶୀଳ କରିଛି ।

ସାହିତ୍ୟ ଓ ରାଜନୀତିକୁ ଜୀବନର ବ୍ରତ କରିଥିବା ଗାଳ୍ପିକ ହେଉଛନ୍ତି ନିତ୍ୟାନନ୍ଦ ମହାପାତ୍ର । ଏଗାରଟା, କ୍ଷଣିକା, ଧଳାଗାର ଓ କଳାଗାର, ଆଖି ନାହିଁ କାନ ନାହିଁ ପ୍ରଭୃତି ଗଳ୍ପ ସଂକଳନ ତାଙ୍କ ଲେଖନୀ ନିଃସୃତ । ସ୍ୱାଧୀନତା ପୂର୍ବ ଓ ପରବର୍ତ୍ତୀ ରାଜନୈତିକ, ସାମାଜିକ ପ୍ରଭୃତି ଘଟଣାକୁ ଭିତ୍ତିକରି ସେ ଗଳ୍ପ ରଚନା କରିଛନ୍ତି । ତାଙ୍କ ଗଳ୍ପରେ ରୋମାଣ୍ଟିକ୍ ଭାବନା ସହିତ ସମାଜ ସଚେତନତା ପ୍ରକାଶ ପାଇଛି । ମଣିଷ ମନଗହନର କଥା କହିବାରେ ସେ ଧୁରୀଣ । ପ୍ରେମ, ବାତ୍ସଲ୍ୟଭାବ, ହାସ୍ୟରସ ବି ତାଙ୍କ ସୃଷ୍ଟିରେ ଉକୁଟି ଉଠିଛି । ଉପମା, ବ୍ୟଙ୍ଗ, ନାଟକୀୟଶୈଳୀକୁ ସେ ତାଙ୍କ ଗଳ୍ପ ସୃଷ୍ଟିରେ ଆପଣେଇ ନେଇଛନ୍ତି ।

ଲଘୁ ହାସ୍ୟଧର୍ମୀ ଗାଳ୍ପିକ ବାମାଚରଣ ମିତ୍ରଙ୍କ ଓଡ଼ିଆ ଗଳ୍ପ ସାହିତ୍ୟକୁ ଅବଦାନ କିଛି କମ୍ ନୁହେଁ । ବଟମହାପୁରୁଷ, ସ୍ୱପ୍ନସିଦ୍ଧି, ଏଣୁଣ୍ଟତେଣୁଣ୍ଟ, ମିତ୍ରକଳ୍ପ, ପାଷାଣର ପ୍ରାଣ, ମହାପୁରୁଷବାଗ ଇତ୍ୟାଦି ଗଳ୍ପ ସଂକଳନଗୁଡ଼ିକ ତାଙ୍କ ଗାଳ୍ପିକ ଜୀବନର ସ୍ମୃତିବହନ କରେ । ସମାଜ ଓ ବ୍ୟକ୍ତି ଜୀବନର ବିଭିନ୍ନ ଘଟଣାକୁ ଭିତ୍ତିକରି ସେ ଗଳ୍ପ ରଚନା କରିଛନ୍ତି । ସରଳ, ଚଟୁଳ କଥାରେ ସେ ଗପ କହନ୍ତି । ହାସ୍ୟରସକୁ ଆଧାର କରି ମନୁଷ୍ୟର ସୁଖ ଦୁଃଖକୁ ବ୍ୟକ୍ତ କରିବା ହେଉଛି ତାଙ୍କ ରଚନାର ପରାକାଷ୍ଠା । ତାଙ୍କ ସମ୍ପର୍କରେ ଆଲୋଚକ ପୂର୍ଣ୍ଣାନନ୍ଦ ଦାନୀ କହନ୍ତି– 'ମିତ୍ରଙ୍କ

ରଚନାଶୈଳୀ ସୁସ୍ପଷ୍ଟ । ତାଙ୍କ ସ୍ୱଭାବ, ସୁଲଭ ବ୍ୟଙ୍ଗ ହାସ୍ୟରସ ରୁଚିକର ଏବଂ ସଂସ୍କାରଲିପ୍ସା ଅଭିପ୍ରେତ । ଏ ସମସ୍ତ ଭିତରେ ବାହ୍ୟ ଘଟଣା ହୋଇଥାଏ ନିମିତ୍ତ ମାତ୍ର–ଅନ୍ତର ତଥା ଅନ୍ତରଙ୍ଗ ଘଟଣାର ହୁଏ ବାସ୍ତବ ରୂପାୟନ । କେତେବେଳେ ଚରିତ୍ରକୁ ନେଇ ଘଟଣା ଅବା ଘଟଣାକୁ ନେଇ ଚରିତ୍ର ବିନ୍ୟାସ ହୋଇଛି । ମାତ୍ର ତତ୍ତ୍ୱ ଓ ବିଶ୍ଳେଷଣଧର୍ମୀ ବ୍ୟାଖ୍ୟାନ ମଧ୍ୟରେ ଜୀବନ ଦର୍ଶନର ବର୍ଣ୍ଣନା ଆଟୋପ ତାଙ୍କ ଗଳ୍ପକୁ କରିଛି ଭାରାକ୍ରାନ୍ତ । ଯାହା ପାଠକ ରୁଚି ନିମିତ୍ତ କ୍ଳାନ୍ତି ଆଉ ବିରକ୍ତିବୋଧକ । ହେଲେ ତାଙ୍କ ସରଳ, ସାବଲୀଳ ଭାଷା, ବିମଳ ହାସ୍ୟରସ ପାଠକୀୟ ମନକୁ ଏ ଦିଗରୁ ଭୁଲାଇ ନେଇଯିବାରେ ସକ୍ଷମ ହୋଇଥାଏ । ତେଣୁ ତାଙ୍କ ଶୈଳୀ ବିଶ୍ଳେଷଣଧର୍ମୀ ହେଲେ ସୁଦ୍ଧା ସରସ, ସହଜ ଓ ଅନ୍ତରଙ୍ଗ ରୂପେ ଲୋକପ୍ରିୟ ହେବା ହିଁ ତାଙ୍କ ସୃଷ୍ଟିର ସ୍ୱାତନ୍ତ୍ର୍ୟ ।'[୯] ମାର୍ଜିତ ରୁଚିବୋଧ, ଚିନ୍ତାଶୀଳ ଦୃଷ୍ଟିଭଙ୍ଗୀ, ଦାର୍ଶନିକ ସୁଲଭ ବର୍ଣ୍ଣନା, ଚଟୁଳତା ଗାଳ୍ପିକ ମିତ୍ରଙ୍କ ସୃଷ୍ଟିର ଉପାଦାନ ।

ବ୍ରହ୍ମାନନ୍ଦ ପଣ୍ଡା ଓଡ଼ିଆ ସାହିତ୍ୟ ଜଗତରେ ଜଣେ ସୁଦକ୍ଷ ଗାଳ୍ପିକ । ୧୯୪୩ ମସିହାରେ ତାଙ୍କର ପ୍ରଥମ ଗଳ୍ପ 'ମରୁଚ୍ଛାୟା' ପ୍ରକାଶିତ ହୋଇଥିଲା । ମହକ, ସାଧାରଣ ସତ୍ୟ, ଭୋଳିକକା, ଆତ୍ମପରିଚୟ, କଳାକଞ୍ଚନା, ଫଲ୍‌ଗୁର ତରଙ୍ଗ, ପ୍ରାନ୍ତଯମକ ପ୍ରଭୃତି ଗଳ୍ପ ସଂକଳନ ତାଙ୍କ ଗାଳ୍ପିକ ଜୀବନର ବିଶିଷ୍ଟ ସମ୍ପଦ । ଜୀବନର ବ୍ୟଥା, ବେଦନା, ଅସହାୟତାକୁ ସେ ତାଙ୍କ ଗଳ୍ପରେ ନିଖୁଣ ଭାବେ ବର୍ଣ୍ଣନା କରିଛନ୍ତି । ଆଭାସଧର୍ମୀ ଗଳ୍ପ ରଚନା କରିବାରେ ସେ ସଫଳ ହୋଇଛନ୍ତି । କାହାଣୀକୁ ବାଦ୍ ଦେଇ ଇଙ୍ଗୀତ ମାଧ୍ୟମରେ କୌଣସି ବିଷୟ ଉପରେ ଆଲୋକପାତ କରିବା ହେଉଛି ଆଭାସ ଗଳ୍ପର ଲକ୍ଷଣ । ତାଙ୍କର ଭାଷା କାବ୍ୟିକ, ପ୍ରତୀକଧର୍ମୀ ହୋଇଛି ।

ଓଡ଼ିଆ କଥା ସାହିତ୍ୟକୁ କାହ୍ନୁଚରଣ ମହାନ୍ତିଙ୍କ ଅବଦାନ ସର୍ବଜନବିଦିତ । କାଲି ଓ ଆଜି, ବିଦିଆ, ଆକାଶ କଇଁଆ, ରାମଲୁ, ବାସୁଳେଇ କୋପ, ପ୍ରତିକାର, ପ୍ରନ୍‌କୁ ପ୍ରଭୃତି ଗଳ୍ପର ସେ ସ୍ରଷ୍ଟା । ଗ୍ରାମୀଣ ଓ ଆଦିବାସୀ ସମାଜ, ପ୍ରଣୟ ଆଦି ବିଷୟକୁ ଅବଲମ୍ବନ କରି ସେ ଗପ ଲେଖିଛନ୍ତି । ତାଙ୍କ ଗଳ୍ପଗୁଡ଼ିକ ବିଶେଷଭାବେ ସମାଜକୈନ୍ଦ୍ରିକ । ସମାଜର ଚିରାଚରିତ ପ୍ରଥାକୁ ଭାଙ୍ଗି ନୂଆ କିଛି କରିବାର ଆଗ୍ରହ

ସେ ଦେଖାଇ ପାରିନାହାନ୍ତି । ତାଙ୍କ ଗଳ୍ପରେ ମଣିଷକୁ ଭଲପାଇବା ଯେମିତି ପ୍ରଚୁର, ଆଦର୍ଶ ବ୍ୟକ୍ତିତ୍ୱ ପ୍ରତି ସେ ସଦା ତତ୍ପର। କାହ୍ନୁଚରଣଙ୍କ ଗଳ୍ପ ବର୍ଣ୍ଣନାବହୁଳ, ବିବୃତିମୂଳକ ଓ ଭାଷା ବି ସରଳ । ପ୍ରେମଭିତ୍ତିକ ଗଳ୍ପରେ ସଂଯମତାକୁ ସେ ଗୁରୁତ୍ୱ ଦେଇଛନ୍ତି । ମଣିଷ କର୍ମଫଳ ଓ ଦୁଃଖଦୁର୍ଦ୍ଦଶା ଭୋଗିବା କଥାକୁ ସେ ତାଙ୍କ ଗଳ୍ପରେ ବେଶୀ କହିଛନ୍ତି ।

ଏହି ସମୟରେ ଆଉ ଜଣେ ପ୍ରସିଦ୍ଧ ଗାଳ୍ପିକ ହେଉଛନ୍ତି ଗୋପୀନାଥ ମହାନ୍ତି । ଘାସଫୁଲ, ପୋଡ଼ାକପାଳ, ନବବଧୂ, ଛାଇ ଓ ଆଲୁଅ, ଗୁପ୍ତଗଙ୍ଗା, ରଣଧନ୍ଦୋଳ, ଉଡ଼ନ୍ତା ଖଇ ଇତ୍ୟାଦି ଗଳ୍ପଗ୍ରନ୍ଥର ସେ ପ୍ରଣେତା। ସମାଜର ବିଭିନ୍ନ କ୍ଷେତ୍ରର ବିଷୟବସ୍ତୁ ତାଙ୍କ ଗଳ୍ପର କଥାବସ୍ତୁ ହୋଇଛି । କୃଷକ, ଶ୍ରମିକ, ଆଦିବାସୀ, ଅଭିଜାତ ମଣିଷ ହେଉଛନ୍ତି ତାଙ୍କ ଗଳ୍ପର ଚରିତ୍ର । 'ସମାଜର ବିଭିନ୍ନ ସ୍ତରରୁ ସେ ଚରିତ୍ରମାନଙ୍କୁ ଚୟନ କରି ଆପଣାର ଅନ୍ତର ସହିତ ମିଶାଇ ଦେଇଛନ୍ତି ଏବଂ ଅନ୍ତରର କଷଟି ପଥରରେ ପରୀକ୍ଷା କରି ପୁଣି ଗଳ୍ପ ଭିତର ଦେଇ ସମାଜ ମଣିଷ ନିକଟକୁ ଛାଡ଼ି ଦେଇଛନ୍ତି ଚିହ୍ନାପରିଚ ହେବାଲାଗି । ତେଣୁ ସମାଜ-ମଣିଷ ତାଙ୍କ ଗଳ୍ପ-ମଣିଷଙ୍କୁ ଆପଣାର କରିନିଏ- ନିଜ ଭିତରେ ସେମାନଙ୍କୁ ଦେଖେ- ଅନ୍ୟ ଅର୍ଥରେ ସେହି ସମାଜ-ମଣିଷ ହିଁ ତାଙ୍କ ଗଳ୍ପ-ମଣିଷ, ସେହି ସମାଜ-ପ୍ରକୃତି ହିଁ ତାଙ୍କ ଗଳ୍ପ-ପ୍ରକୃତି, ସେହି ସମାଜ-ପରିବେଶ ହିଁ ତାଙ୍କ ଗଳ୍ପ-ପରିବେଶ । ସେହି ସମାଜ-ମାନସ ହିଁ ତାଙ୍କ ଗଳ୍ପ-ମାନସ ।'[୧୦] ଗୋପୀନାଥଙ୍କ ଗଳ୍ପରେ ନିମ୍ନ, ମଧ୍ୟ ଓ ଉଚ୍ଚ ମଧ୍ୟବିତ୍ତ, ସର୍ବହରା ଶ୍ରେଣୀର ଚରିତ୍ରକୁ ଦେଖିବାକୁ ମିଳେ । ସେ ତାଙ୍କ ମନର ଏକ ବିଶେଷ ମୁହୂର୍ତ୍ତକୁ ନେଇ ଗଳ୍ପ ରଚି ତହିଁରେ ଚରିତ୍ର ସଂଯୋଜନା କରିଛନ୍ତି । ଏହି ଚରିତ୍ର ମାଧ୍ୟମରେ ଗାଳ୍ପିକ ନିଜ ସୁଖଦୁଃଖର ଅନୁଭୂତିକୁ କହିଛନ୍ତି । ତାଙ୍କ ଚରିତ୍ରସବୁ ବ୍ୟକ୍ତିସତ୍ତାର ପ୍ରତିନିଧିତ୍ୱ କରନ୍ତି । 'ଗୋପୀନାଥ ଓଡ଼ିଆ ଗଳ୍ପ ସାହିତ୍ୟରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ସ୍ପଷ୍ଟରୂପ ପ୍ରଥମେ କାଉ କୋଇଲି ଗଳ୍ପରେ ପ୍ରଦର୍ଶନ କରିଛନ୍ତି ।'[୧୧] ଆତ୍ମଅନ୍ୱେଷା, ଆଦର୍ଶ ଓ ବାସ୍ତବବାଦର ପ୍ରୟୋଗରେ ତାଙ୍କ ଗଳ୍ପ ବାସ୍ତବିକ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଛି । ସାଧାରଣ ମାନବ ମୁଖର ଜୀବନ୍ତ ଭାଷା, କାବ୍ୟିକ ଚିତ୍ରକଳ୍ପ, ଦାର୍ଶନିକ ଚିନ୍ତାଧାରା ତାଙ୍କ ସୃଷ୍ଟି ପାଇଁ ଉପଯୋଗୀ ହୋଇପାରିଛି ।

ହାସ୍ୟଧର୍ମୀ ଗାଳ୍ପିକ ଭାବେ ବସନ୍ତ ଶତପଥୀ ସୁପରିଚିତ । ଆଣ୍ଟିରୋମାଣ୍ଟିକ, ଗୋଟିଏ ଆଳୁ, ହାଇଦ୍ରାବାଦ ଅଙ୍ଗୁର, ମାଂଶାସୀମାନଙ୍କ ଉଦ୍ଦେଶ୍ୟରେ, ଆକାଶୀଫୁଲ, ଗଙ୍ଗାଗାଙ୍ଗୀ, ଅଜାଗା ଘାଆ ପ୍ରଭୃତି ଗଳ୍ପ ସଂକଳନ ତାଙ୍କୁ ପ୍ରସିଦ୍ଧି ଦେଇଛି । ତାଙ୍କ ଗଳ୍ପରେ ସମାଜ ଜୀବନର ଚିତ୍ର ଅଧିକ ପ୍ରତିଫଳିତ ହୋଇଛି । ଲଘୁ ହାସ୍ୟରସ ମାଧ୍ୟମରେ ଜୀବନ ସତ୍ୟକୁ ଉଦ୍‌ଘାଟନ କରିବା ହେଉଛି ତାଙ୍କର ଲକ୍ଷ୍ୟ । ହାସ୍ୟ ବ୍ୟଙ୍ଗକୁ ନେଇ କାରୁଣ୍ୟର ମାର୍ମିକ ଚିତ୍ର ଉତ୍ତୋଳନ କରିବାରେ ସେ ମଧ୍ୟ ସୁନିପୁଣ । କାରଣ କଥାକାର ବସନ୍ତଙ୍କ ବ୍ୟକ୍ତିଗତ ଜୀବନ ଥିଲା ଅତୀବ ଦୁଃଖଦାୟକ । ଦୁଃଖରେ ସେ ଭାଙ୍ଗି ନ ପଡ଼ି ଜୀବନ ଜିଇବାର କଳାକୁ ଆପଣେଇ ନେଇଥିଲେ । 'ତିନି ପୁରୁଷର ଦାରିଦ୍ର୍ୟ ଓ ଦୁଃଖମୟ ଜୀବନର ଅଭାବ, ଅନଟନ, ଦୁଃଖ ଓ ଯନ୍ତ୍ରଣା ମଧ୍ୟରେ ହସିବା ପାଇଁ ସେ କଦାପି କୁଣ୍ଠାବୋଧ କରୁ ନ ଥିଲେ ।'[୧୨] ବସନ୍ତ ଶତପଥୀଙ୍କ ଗଳ୍ପର ଘଟଣା ଓ ଚରିତ୍ର ସବୁ ମାମୁଲି, ସାଧାରଣ ସ୍ତରର । ମୟୁରଭଞ୍ଜ, ବାଲେଶ୍ୱର ଅଞ୍ଚଳର କଥିତ ଭାଷା ହେଉଛି ତାଙ୍କ ଗଳ୍ପର ଭାଷା । ଶ୍ଳେଷଧର୍ମୀ ଭାଷା ଗାଳ୍ପିକ ଶତପଥୀଙ୍କ ସୃଷ୍ଟିରେ ବ୍ୟବହାର ହୋଇ ଭାବ ଅନୁପୂରକ ହୋଇଛି ।

ରୋମାଣ୍ଟିକ୍ କଥାକାର ରୂପେ ରାଜକିଶୋର ରାୟ ଓଡ଼ିଆ ଗଳ୍ପ ପାଠକଙ୍କ ନିକଟରେ ସମାଦୃତ । ନୀଳଲହରୀ, ବିକଚ ଶତଦଳ, ଅଶୋକଚକ୍ର, ଜୟଶ୍ରୀ, ଦୀପାଳୀ, ବନଜ୍ୟୋତ୍ସ୍ନା, ଶୋଣିତ, ଏହି କି ଦେବାୟତନ, ପଙ୍କଚନ୍ଦନ ପ୍ରଭୃତି ଗଳ୍ପ ସଂକଳନ ତାଙ୍କ କୃତିତ୍ୱର ନିଦର୍ଶନ । ପ୍ରେମ, ଆର୍ଥନୀତିକ ସଂକଟ, ଯୌତୁକ ପ୍ରଥା, ଗ୍ରାମ୍ୟ ସଂଗଠନ, ସାଂପ୍ରଦାୟିକ ଦଙ୍ଗା, ବନ୍ୟାଜନିତ ସମସ୍ୟା ଇତ୍ୟାଦି ଗାଳ୍ପିକ ରାୟଙ୍କ ସୃଷ୍ଟିର କଥାଭାଗରେ ସ୍ଥାନ ପାଇଛି । ରୋମାଣ୍ଟିକ୍ ମାନବବାଦ ତାଙ୍କ ଗଳ୍ପର ବିଶିଷ୍ଟ ବିଭବ । ରୋମାନ୍ସଧର୍ମୀ ଭାବପ୍ରବଣତା, ମାନବିକ ସମ୍ବେଦନଶୀଳତା, ବାସ୍ତବ ଓ ଆଦର୍ଶର ମିଳନ ଗାଳ୍ପିକ ରାୟଙ୍କ ଗଳ୍ପ ରଚନାର ଉତ୍କର୍ଷ ସାଧନ କରିଛି । ତତ୍ସମ ଶବ୍ଦ, ନାଟକୀୟ ଭାଷା, ଇଂରାଜି ଗଦ୍ୟରୀତି, ବ୍ୟକ୍ତିକ ଶୈଳୀ, ଅଭିଜାତ ପରିବେଶ ହେଉଛି ତାଙ୍କ ଗଳ୍ପକଳାର ପରିଚୟ ।

ଦରଦୀ କଥାଶିଳ୍ପୀ ଭାବେ ରାଜକିଶୋର ପଟ୍ଟନାୟକ ସୁବିଦିତ । ତାଙ୍କ ରଚିତ ଗଳ୍ପଗୁଡ଼ିକ ତୁଠପଥର, ଶାଳଗ୍ରାମ, ନିଶାଣ ଖୁଣ୍ଟ, ପଥୁକି, କଇନାର ଫୁଲ, ହାଟସଉଦା, ହାଟବାହୁଡ଼ା ପ୍ରଭୃତି ଗଳ୍ପ ସଂକଳନରେ ସନ୍ନିବେଶିତ ହୋଇଛି । କେବଳ ମାନବ ନୁହେଁ, ମାନବେତରଙ୍କ ପ୍ରତି ସେ ମଧ୍ୟ ସହାନୁଭୂତିଶୀଳ ହୋଇଛନ୍ତି ।

ମଣିଷ ସହିତ ପଶୁପକ୍ଷୀମାନଙ୍କର ସଂପର୍କକୁ ସେ ଗଳ୍ପରେ ଦର୍ଶାଇଛନ୍ତି । ପଶୁପକ୍ଷୀମାନଙ୍କର କାର୍ଯ୍ୟକଳାପକୁ ଅବଲମ୍ବନ କରି ବ୍ୟଙ୍ଗାତ୍ମକ ଶୈଳୀରେ ମନୁଷ୍ୟର ଅସଲ ସ୍ୱରୂପକୁ ଉଦ୍‌ଘାଟନ କରିଛନ୍ତି । ପ୍ରତିଦାନ, ସୁଲତାନ୍, ପଶୁ, ନୀଡ଼, ମୂକ, ମୂର୍ଖ ପ୍ରଭୃତି ଗଳ୍ପରେ ମାନବେତର କଥା କୁହାଯାଇଛି । ମନସ୍ତାତ୍ତ୍ୱିକ ବର୍ଣ୍ଣନା, ମାନବିକ ସମ୍ବେଦନା, ବାସ୍ତବ ଜୀବନଚିତ୍ର ତାଙ୍କ ସୃଷ୍ଟିରେ ଭରପୂର । ମୋଟଉପରେ କହିବାକୁ ଗଲେ ତାଙ୍କ ଗଳ୍ପର ଭାଷା ଓ ପ୍ରକାଶଭଙ୍ଗୀ ଆଡ଼ମ୍ବରବିହୀନ, ସରଳ ।

ବିଂଶ ଶତାବ୍ଦୀର ତୃତୀୟ ଦଶକରୁ ସ୍ୱାଧୀନତା ପ୍ରାପ୍ତି କାଳ ମଧ୍ୟରେ ଅନ୍ୟ ଯେଉଁ ଗାଳ୍ପିକମାନେ ଲେଖନୀ ଚଳାଇଥିଲେ ସେମାନେ ହେଲେ ରାମପ୍ରସାଦ ସିଂ, ଜଳନ୍ଧର ଦେବ, ଦେବହୂତି ଦେଈ, ହରିଶ୍ଚନ୍ଦ୍ର ବଡ଼ାଳ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ପ୍ରାଣବନ୍ଧୁ କର, ଜ୍ଞାନୀନ୍ଦ୍ର ବର୍ମା, ଗୋପବନ୍ଧୁ ଚୌଧୁରୀ, ଶ୍ରଦ୍ଧାକର ସୁପକାର ପ୍ରମୁଖ । ଏହି ଗାଳ୍ପିକମାନଙ୍କ ମଧ୍ୟରୁ କେତେକ ଗାନ୍ଧିବାଦକୁ ନେଇ ଗଳ୍ପ ରଚନା କରୁଥିଲାବେଳେ ଅନ୍ୟମାନେ ସାମ୍ୟବାଦକୁ ଗୁରୁତ୍ୱ ଦେଉଥିଲେ । କେତେଜଣ ଆଦର୍ଶବାଦୀ ଥିଲାବେଳେ ଅନ୍ୟ କେତେକ ବାସ୍ତବବାଦୀ ଥିଲେ । ଏହି ସମୟରେ ସମାଜ-ମଣିଷ ବ୍ୟକ୍ତି-ମଣିଷର ସ୍ତରକୁ ଓହ୍ଲାଇ ଆସିଛି । ନିର୍ଦ୍ଦିଷ୍ଟ ଭାବବିନ୍ଦୁକୁ ନେଇ ଗଳ୍ପ ରଚନା କରାଯାଇଛି । ବ୍ୟଞ୍ଜନା ପରିବର୍ତ୍ତେ ବର୍ଣ୍ଣନାର ବାହୁଲ୍ୟ ପରିଲକ୍ଷିତ ହୋଇଛି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଗଳ୍ପର ଆଙ୍ଗିକ ଓ ଆତ୍ମିକରେ ବିଶେଷ ପରିବର୍ତ୍ତନ ଦେଖାଦେଇଛି । ଆଧୁନିକ ସହରୀ ମଣିଷର ବହୁବିଧ ସମସ୍ୟା, ଜଟିଳ ଅନ୍ତର୍ଦ୍ୱନ୍ଦ୍ୱ, ନିଃସଙ୍ଗଭାବ, ବ୍ୟର୍ଥତାବୋଧ ଆଦି ଗଳ୍ପରେ ପ୍ରକାଶ ପାଇଛି । ଜୀବନଜିଜ୍ଞାସା ହୋଇଛି ଆଧୁନିକ ଗଳ୍ପର ମୁଖ୍ୟ ସ୍ୱର । ସ୍ୱାଧୀନତାର ଉତ୍ତର କାଳରେ ଯେଉଁ ବିଶିଷ୍ଟ ଗାଳ୍ପିକମାନେ ଲେଖନୀ ଚଳାଇ ଓଡ଼ିଆ ଗଳ୍ପର ଶ୍ରୀବୃଦ୍ଧି ସାଧନ କରିଛନ୍ତି ସେମାନେ ହେଲେ ସୁରେନ୍ଦ୍ର ମହାନ୍ତି, ମନୋଜ ଦାସ, କିଶୋରୀ ଚରଣ ଦାସ, ଅଖିଳ ମୋହନ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ ପ୍ରମୁଖ ।

ସ୍ୱାଧୀନତା ପୂର୍ବରୁ ଗଳ୍ପ ରଚନା କରିଥିଲେ ମଧ୍ୟ ସ୍ୱାଧୀନତା ପରେ ବିଶେଷ ପ୍ରସିଦ୍ଧି ଲାଭ କରିଥିବା କଥାକାର ହେଉଛନ୍ତି ସୁରେନ୍ଦ୍ର ମହାନ୍ତି । ୧୯୩୮ ମସିହାରେ ଉତ୍କଳ ସାହିତ୍ୟ ପତ୍ରିକାର ଏକଚାଳିଶ ଭାଗ ପଞ୍ଚମ ସଂଖ୍ୟାରେ ପ୍ରକାଶିତ ତାଙ୍କ

ବନ୍ଦୀ ଗଳ୍ପରୁ ସେ ଗାଳ୍ପିକର ମାନ୍ୟତା ପାଇଥିଲେ । ତାଙ୍କ ଗଳ୍ପ ସଂକଳନଗୁଡ଼ିକ ହେଲା– କୃଷ୍ଣଚୂଡ଼ା, କବି ଓ ନର୍ତ୍ତକୀ, ମହାନିର୍ବାଣ, ମରାଳର ମୃତ୍ୟୁ, ଓ ! କାଲ୍‌କାଟା, ମାଂସର କୋଣାର୍କ ଇତ୍ୟାଦି । ଐତିହାସିକ, ପୌରାଣିକ, ବୌଦ୍ଧଯୁଗୀୟ, ସାମାଜିକ, ରାଜନୈତିକ, ଆର୍ଥନୀତିକ ସମସ୍ୟାର ଚିତ୍ର ତାଙ୍କ ଗଳ୍ପରେ ଦେଖିବାକୁ ମିଳେ । ବଞ୍ଚିବାର ମମତାରେ ସେ ପାପପୁଣ୍ୟର ବିଚାର କରିନାହାନ୍ତି । ସମସ୍ତ ବାଦବିସମ୍ବାଦ ସତ୍ତ୍ୱେ ସ୍ଥିତି ହିଁ ମଧୁର । ଏହି ମତବାଦକୁ ସେ ତାଙ୍କ ସୃଷ୍ଟିରେ ଜାହିର କରିଛନ୍ତି । ନୈରାଶ୍ୟବାଦୀଙ୍କ ହୃଦୟରେ ଏହା ଜୀବନର ଆଶାକୁ ଉଜ୍ଜୀବିତ କରିଛି । ଗାଳ୍ପିକ ବସ୍ତୁବାଦ ଅପେକ୍ଷା ବ୍ୟକ୍ତିବାଦକୁ ଗୁରୁତ୍ୱ ଦେଇଛନ୍ତି । କୃଷ୍ଣଚୂଡ଼ା, ବରଜୁଷେଣ୍ଢଘାଇ ଗଳ୍ପରେ ସୁସ୍ଥ ଜୀବନବୋଧ ସହ ମାନବବାଦର ସମନ୍ୱୟ ଆଣିଛନ୍ତି । ସେହିପରି ତୃଷ୍ଣା ଓ ବିତୃଷ୍ଣା, ପାଗଳଗାରଦର କାହାଣୀ, ଖାଦାନ ପରି କେତେକ ଗଳ୍ପରେ ସ୍ଥିତିବାଦ ଓ ଏକାନ୍ତ ମଣିଷର ସ୍ୱରକୁ ଶୁଣାଇଛନ୍ତି । ତାଙ୍କ ଗଳ୍ପର ଚରିତ୍ର ଉତ୍କଳୀୟ ପରିବେଶରେ ସୃଷ୍ଟି ହୋଇଥିଲେ ମଧ୍ୟ ବିଶ୍ୱମାନବୀୟ ଚେତନାର ପ୍ରତିନିଧିତ୍ୱ କରନ୍ତି । ପତାକା ଉତ୍ତୋଳନ, ଡିନୋସାରର ଆତ୍ମା ପ୍ରଭୃତି ଗଳ୍ପରେ ସ୍ୱାଧୀନତା ପରବର୍ତ୍ତୀ କାଳର ଅବକ୍ଷୟ ସାମନ୍ତବାଦ ସମାଜର ଚିତ୍ତସଂଘର୍ଷକୁ ସେ ପ୍ରଦର୍ଶନ କରିଛନ୍ତି । ଆଇଡିଆ କିମ୍ବା ଭାବକୁ ନେଇ ଓଡ଼ିଆ ଗଳ୍ପ ସାହିତ୍ୟରେ ସେ ପ୍ରଥମେ ଆଇଡିଆ ଧର୍ମୀ ଗଳ୍ପ ରଚନା କରିଛନ୍ତି । ସୁରେନ୍ଦ୍ର ମହାନ୍ତିଙ୍କ ଶୈଳୀ ସମ୍ଭ୍ରାନ୍ତ ଓ ବଳିଷ୍ଠ । ପରିବେଶ ଓ ଚରିତ୍ରୋପଯୋଗୀ ଭାଷା ବ୍ୟବହାର ତାଙ୍କ ଗଳ୍ପର ନିଦର୍ଶନ । ସେ ପ୍ଲଟ ବା ଚରିତ୍ରକୁ ଗୁରୁତ୍ୱ ନ ଦେଇ ଥିମ୍‌କୁ ନେଇ ଗଳ୍ପ ରଚନା କରିଛନ୍ତି । ଗାଳ୍ପିକ ସୁରେନ୍ଦ୍ର ତାଙ୍କର ସ୍ୱତନ୍ତ୍ର ଶୈଳୀ ପାଇଁ ବିଶେଷ ପରିଚିତ । ନିଜ କ୍ଷୁଦ୍ରଗଳ୍ପ ସମ୍ପର୍କରେ ସୁରେନ୍ଦ୍ର ମହାନ୍ତିଙ୍କ ମନ୍ତବ୍ୟ ହେଲା– 'ପ୍ରକାଶଶୈଳୀର ପରିମାର୍ଜିତ ରୂପ, ଉପସ୍ଥାପନାରେ ନାଟକୀୟତା, ଜୀବନ ସଚେତନ ଅତନ୍ଦ୍ର ଦୃଷ୍ଟି, ବକ୍ତବ୍ୟରେ ମୌଳିକତା, ବିଷୟବସ୍ତୁରେ ଅଭିନବତ୍ୱ, ସାମ୍ପ୍ରତିକ ସମାଜ ଓ ତାହାର ପ୍ରତିଷ୍ଠିତ ମୂଲ୍ୟବୋଧ ପ୍ରତି କଟାକ୍ଷ ସର୍ବୋପରି କାବ୍ୟିକ ମେଜାଜ୍,· ତାଙ୍କ କ୍ଷୁଦ୍ରଗଳ୍ପକୁ ଏକ ଆଭିଜାତ୍ୟ ପ୍ରଦାନ କରିଥିଲା । ପୌରାଣିକ, ବୌଦ୍ଧଯୁଗଠାରୁ ଆରମ୍ଭ କରି ସାମ୍ପ୍ରତିକ ଯନ୍ତ୍ର ଜର୍ଜ୍ଜରିତ କାଳ ପର୍ଯ୍ୟନ୍ତ ତାଙ୍କର କ୍ଷୁଦ୍ରଗଳ୍ପଗୁଡ଼ିକର ପରିଧି ବିସ୍ତୃତ ଓ ବର୍ଣ୍ଣାଢ଼୍ୟ ।'[୧୩] ଗାଳ୍ପିକ ସୁରେନ୍ଦ୍ରଙ୍କ କ୍ଷୁଦ୍ରଗଳ୍ପରେ କାବ୍ୟିକ ଆବେଦନ ମନୋହର ।

ସ୍ୱାଧୀନତା ପରେ ଅର୍ଥାତ୍ ୧୯୪୯ ମସିହାରେ ମନୋଜ ଦାସଙ୍କ ସମୁଦ୍ରର କ୍ଷୁଧା ଗଳ୍ପ ପ୍ରକାଶ ପାଇବା ପରେ ସେ ଗାଳ୍ପିକର ପରିଚିତି ପାଇଛନ୍ତି । ତାଙ୍କ ସମୁଦ୍ରର କ୍ଷୁଧା, ଜୀବନର ସ୍ୱାଦ, ବିଷକନ୍ୟାର କାହାଣୀ, ଆରଣ୍ୟକ, ମନୋଜ ଦାସଙ୍କ କଥା ଓ କାହାଣୀ, ଆବୁପୁରୁଷ ଓ ଅନ୍ୟାନ୍ୟ କାହାଣୀ ଆଦି ଗଳ୍ପ ସଂକଳନ ଓଡ଼ିଆ ସାହିତ୍ୟକୁ ଅମୂଲ୍ୟ ଅବଦାନ । ପ୍ରଥମେ ଗାଳ୍ପିକ ମାର୍କ୍ସବାଦୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିଲେ ହେଁ ପରକାଳରେ ଅରବିନ୍ଦଙ୍କ ଅତିକ୍ରାନ୍ତ ସମାଜବାଦକୁ ଗୁରୁତ୍ୱ ଦେଇଛନ୍ତି । ସାମାଜିକ, ରାଜନୈତିକ, ପୌରାଣିକ, କିମ୍ବଦନ୍ତୀମୂଳକ କଥା ଇତ୍ୟାଦି ହେଉଛି ତାଙ୍କ ଗଳ୍ପର ବିଷୟବସ୍ତୁ । ଭାରତୀୟ ପ୍ରାଚୀନ କାହାଣୀର ଛାୟାରେ ସେ ଆଧୁନିକ କ୍ଷୁଦ୍ରଗଳ୍ପ ସୃଷ୍ଟି କରିଛନ୍ତି । ରାୟ ବାହାଦୂରଙ୍କ ନିଶ, ମହମବତୀ ଆଦି ଗଳ୍ପରେ ସ୍ୱାଧୀନତା ପରବର୍ତ୍ତୀ ସାମନ୍ତବାଦୀ ସମାଜର ଚିରସଂଘର୍ଷ ତାଙ୍କ ଗଳ୍ପରେ ଦେଖିବାକୁ ମିଳେ । ଏସବୁ ସାମନ୍ତବାଦୀ ଚରିତ୍ର ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପ ପରି ରକ୍ଷଣଶୀଳ ନ ହୋଇ ଅସହାୟତା ବ୍ୟକ୍ତ କରିଛନ୍ତି ଓ ମୁକ୍ତିର ସ୍ୱପ୍ନ ଦେଖିଛନ୍ତି । ମନୋଜଙ୍କ ଚରିତ୍ରସବୁ ବ୍ୟକ୍ତି-ମଣିଷରୁ ଆତ୍ମ-ମଣିଷକୁ ରୂପାନ୍ତରିତ ହୋଇଛନ୍ତି । ମଣିଷ ଭିତରେ ଥିବା ଅସହାୟତାକୁ ଉଦ୍‌ଘାଟନ କରିବାରେ ସେ ସଫଳ ହୋଇଛନ୍ତି । ଏହି ଅସହାୟ ମାନବ ଦିନେ ନା ଦିନେ ମହତ୍ତ୍ୱପୂର୍ଣ୍ଣ ଜୀବନର ଅଧିକାରୀ ହେବ ବୋଲି ସେ ଆଶାପୋଷଣ କରିଛନ୍ତି । ଆଧ୍ୟାତ୍ମିକତାର ବ୍ୟଞ୍ଜନା ତାଙ୍କ ଗଳ୍ପର ଅନ୍ୟ ଏକ ବଡ଼ ବିଭବ । ପଞ୍ଚତନ୍ତ୍ରର ବିଷ୍ଣୁ ଶର୍ମାଙ୍କ ପରି ପଶୁପକ୍ଷୀଙ୍କୁ ସେ ତାଙ୍କ ଗଳ୍ପର ଚିତ୍ର, ଚରିତ୍ର ଭାବେ ନେଇଛନ୍ତି । ଏମାନଙ୍କୁ ପ୍ରତୀକ, ଚିତ୍ରକଳ୍ପ ଭାବେ ଦର୍ଶାଇ ମାନବର ସ୍ୱରୂପକୁ ଆବିଷ୍କାର କରିବା ଓ ଭାରତୀୟ ସଂସ୍କୃତିର ମୂଳ ଲକ୍ଷ୍ୟକୁ ବଜାୟ ରଖିବା ହେଉଛି ତାଙ୍କର ଉଦ୍ଦେଶ୍ୟ । ମନୋଜ ଦାସଙ୍କ ଗଳ୍ପରେ ସାଧାରଣ ଓ ସାମନ୍ତବାଦୀ ଚରିତ୍ରମାନଙ୍କୁ ଦେଖିବାକୁ ମିଳେ । ତାଙ୍କ ଗଳ୍ପ ବ୍ୟଙ୍ଗଧର୍ମୀ । ଚରିତ୍ର ମନର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରିବାରେ ସେ ସିଦ୍ଧହସ୍ତ । କଳ୍ପନାଶ୍ରୟୀ ଉଦ୍ଭଟତା ଓ ଲୋକକାହାଣୀକୁ ରୂପକ ଭାବରେ ଗ୍ରହଣ କରି ସେ ଆଧୁନିକ ମଣିଷର ଭିତିରି କଥାକୁ କହିବାରେ ସକ୍ଷମ । ତୀକ୍ଷ୍ଣ ବ୍ୟଞ୍ଜନା, ପ୍ରତୀକାତ୍ମକ ଭାଷା, ରୋମାଞ୍ଚପୂର୍ଣ୍ଣ ଶୈଳୀ ତାଙ୍କ ଗଳ୍ପକୁ ସରସ ସୁନ୍ଦର କରିଛି ।

ଗାଳ୍ପିକ କିଶୋରୀ ଚରଣ ଦାସ ମଣିଷ ମନର କଥା କହିବାରେ ବେଶ୍ ପାରଙ୍ଗମ । ତାଙ୍କର ଭଙ୍ଗାଖେଳନା, ଲକ୍ଷ ବିହଙ୍ଗ, ଠାକୁର ଘର, ଘର ବାହୁଡ଼ା,

ନାଲି ଟୁକୁଟୁକୁ ସାଧବ ବୋହୂ, ଗମନ, ଭିନ୍ନ ପାଉଁଶ ପ୍ରଭୃତି ଗଳ୍ପ ସଂକଳନରେ ମଣିଷର ସୂକ୍ଷ୍ମ ଚେତନା ପ୍ରତିଭାତ ହୋଇଛି । ଆଧୁନିକ ମଣିଷର ମାନସିକ ଦ୍ୱନ୍ଦ୍ୱକୁ ସେ ଉଖାରି ନିଖାରିଛନ୍ତି । ତାଙ୍କ ଗଳ୍ପର ଚରିତ୍ର ହେଉଛନ୍ତି ମଧ୍ୟବିତ୍ତ ଶ୍ରେଣୀର ବ୍ୟକ୍ତିବିଶେଷ । ବ୍ୟକ୍ତିଗତ ଜୀବନର ନୈରାଶ୍ୟ, ପାପ, ପୁଣ୍ୟ ଭାବନା ହେଉଛି ତାଙ୍କ ଗଳ୍ପର କଥାବସ୍ତୁ । କିଶୋରୀ ଚରଣଙ୍କ ଗାଳ୍ପିକ ଅନୁଭୂତିର ପରିସର ସୀମିତ ହୋଇଥିବାରୁ ନିଜସ୍ୱ ଚିନ୍ତାଚେତନା, ବୁଦ୍ଧିବିବେକ ବ୍ୟବହାର କରି ସେ ଗଳ୍ପ ସର୍ଜନା କରିଛନ୍ତି । ଆଧୁନିକ ମାନବର ଅସହାୟତା ଓ ବିକୃତ ମନକୁ ସେ ସ୍ପଷ୍ଟ ରୂପେ ଚିତ୍ରଣ କରିଛନ୍ତି । ମଣିଷର ଆଦିମ ପ୍ରବୃତ୍ତି ଯୌନଚେତନାର ବାସ୍ତବ ରୂପ ତାଙ୍କର ରାତି କୁକୁର, ଝରକା, ଆପେଲ, ଲକ୍ଷ୍ୟ ବିହଙ୍ଗ ପ୍ରଭୃତି ଗଳ୍ପରେ ପ୍ରତିଫଳିତ ହୋଇଛି । ଛକଢ଼ିର ଶ୍ରୀକୃଷ୍ଣ ଗଳ୍ପରେ ମିଥ୍ ପ୍ରୟୋଗ ଭିତ୍ତିକ ଆଧ୍ୟାତ୍ମିକ ଚେତନା ପ୍ରତିଭାତ ହୋଇଛି । ତାଙ୍କ ଗଳ୍ପଗୁଡ଼ିକ ଅସହାୟ ଜୀବନବୋଧ ସହିତ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ବାହକ । 'ଗଭୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦ୍ୱାରା ସେ ଚରିତ୍ରମାନଙ୍କୁ ନର୍ମାଲ ମେଲରଙ୍କ ମତାନୁଯାୟୀ deep and disturbing କରିବାକୁ ଚେଷ୍ଟିତ ।'[୧୪] ଅତିଦାର୍ଶନିକତା, ବିଶ୍ଳେଷଣଧର୍ମୀ ବର୍ଣ୍ଣନ, ଚେତନାପ୍ରବାହ ପଦ୍ଧତି ତାଙ୍କ ବୌଦ୍ଧିକ ରଚନାଶୈଳୀର ବିଷୟଭୁକ୍ତ । ଆତ୍ମକଥନ ଶୈଳୀ, ପ୍ରତୀକାତ୍ମକ ଭାଷା, ଭାବାନୁସାରୀ ଚରିତ୍ର ଓ ବିଷୟର ବ୍ୟବହାର ସେ ତାଙ୍କ ସୃଷ୍ଟିରେ କରିଛନ୍ତି ।

ମଣିଷର ଅବଚେତନ ମନକଥା କହିବାରେ ଆଉ ଜଣେ ଗାଳ୍ପିକ ହେଲେ ଅଖିଳ ମୋହନ ପଟ୍ଟନାୟକ । ତାଙ୍କ ଗଳ୍ପ ସଂକଳନଗୁଡ଼ିକ ହେଲା– ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର, ଓ ଅନ୍ଧଗଳି, ନଦୀର ନାମ ଗଣତନ୍ତ୍ର, ପ୍ରଥମ ଓ ଶେଷ । ତାଙ୍କର କେତେକ ଗଳ୍ପ ବୋହେମିଆନ ଭାବଧର୍ମକୁ ନେଇ ରଚିତ । ବୋହେମେନିଆନ ଚରିତ୍ରମାନେ ସେମାନଙ୍କ ଜୀବନଧାରଣ ପାଇଁ କୌଣସି କଥାକୁ ପାପପୁଣ୍ୟ ବୋଲି ବିଚାର କରନ୍ତି ନାହିଁ କିମ୍ବା କୌଣସି ଦାୟିତ୍ୱ ନେବାକୁ ଇଚ୍ଛା କରନ୍ତି ନାହିଁ । ପୌଷର ଗୋଟିଏ ରାତ୍ରି, ସୁକାନ୍ତ ମହାନ୍ତି ଗଳ୍ପ ବୋହେମିଆନ ଓ ରୋମାଣ୍ଟିକ ଭାବକୁ ନେଇ କଳ୍ପିତ । ଆଷାଢ଼ସ୍ୟ ପ୍ରଥମ ଦିବସେ, ରୂପନାରାୟଣ ସାହା, ଓ ଅନ୍ଧଗଳି, ନଦୀର ନାମ ଗଣତନ୍ତ୍ର ପ୍ରଭୃତି ଗଳ୍ପ ରାଜନୈତିକ ପୃଷ୍ଠଭୂମିରେ ରଚିତ । କାରଣ ଗାଳ୍ପିକ ଅଖିଳମୋହନ ବାମପନ୍ଥୀ ରାଜନୈତିକ ଚିନ୍ତାଧାରାର

ସମର୍ଥକ ମୂଳରୁ ଥିଲେ । ଡିମିରି ଫୁଲ, କନିଅପା, ରକ୍ତ କଇଁ ପ୍ରଭୃତି ଗଳ୍ପ ଗାଳ୍ପିକଙ୍କ ଅନୁଭୂତିର କଥାକୁ ନେଇ ସୃଷ୍ଟ । ଉଚ୍ଚ ମଧ୍ୟବିତ୍ତ ଚରିତ୍ର ଓ ସମସ୍ୟାକୁ ନେଇ ସେ ତାଙ୍କ ଗଳ୍ପଗୁଡ଼ିକର ପରିକଳ୍ପନା କରିଛନ୍ତି । ବହୁଳ ଇଂରାଜି ଶବ୍ଦ ଓ ସଂଳାପର ପ୍ରୟୋଗ ଅଖିଳମୋହନଙ୍କ ଗଳ୍ପରେ ପରିଦୃଷ୍ଟ ହୁଏ । ସେ ତାଙ୍କ ସୃଷ୍ଟିରେ ଥିମ୍‌କୁ ଗୁରୁତ୍ୱ ଦେଇଛନ୍ତି । ଗାମ୍ଭୀର୍ଯ୍ୟମୟ ପରିବେଶ, ନାଟକୀୟତା, ପ୍ରତୀକାତ୍ମକ ଭାଷା, ମାନବିକତାର ସମନ୍ୱୟରେ ତାଙ୍କ ସୃଷ୍ଟି କମନୀୟ ହୋଇଛି ।

ହାସ୍ୟରସିକ ଗାଳ୍ପିକ ଭାବେ ମହାପାତ୍ର ନୀଳମଣି ସାହୁ ଜଣାଶୁଣା । ତାଙ୍କ ଗଳ୍ପ ସଂକଳନଗୁଡ଼ିକ ହେଲା– ପ୍ରେମ ତ୍ରିଭୁଜ, ଗଞ୍ଜେଇ ଗବେଷଣା, ସୁମିତ୍ରାର ହସ, ବିଷ୍ଣୁମାୟା, ରାନୁ ଅପାଠାରୁ ପୁଷି ପର୍ଯ୍ୟନ୍ତ, ଅନ୍ଧାର ରାତିର ସୂର୍ଯ୍ୟ, ଆକାଶପାତାଳ, ପିଙ୍ଗଳା ସେ ଅନ୍ୟ ଜଣେ, ଅଭିଶପ୍ତ ଗନ୍ଧର୍ବ ପ୍ରଭୃତି । ହାସ୍ୟବ୍ୟଙ୍ଗ ଶୈଳୀରେ ସମାଜର ଦୋଷଦୁର୍ବଳତାକୁ ଦେଖାଇ ଓ ତାକୁ ସୁଧାରି ନେଇ ସୁସ୍ଥ ଜୀବନବୋଧ ସୃଷ୍ଟି କରିବା ହେଉଛି ତାଙ୍କର ଅଭିପ୍ରାୟ । ମହାପାତ୍ରଙ୍କ ପ୍ରେମ ତ୍ରିଭୁଜ, ଗଞ୍ଜେଇ ଗବେଷଣା ଗଳ୍ପଗ୍ରନ୍ଥ ଦ୍ୱୟରେ ଲଘୁ ହାସ୍ୟରସର ପ୍ରାବଲ୍ୟ ଦେଖିବାକୁ ମିଳେ । ଆଧୁନିକ ସଭ୍ୟ ଶିକ୍ଷିତ ବୋଲାଉଥିବା ମନୁଷ୍ୟର ଦୁର୍ବଳତା ଓ ଅସହାୟତାକୁ ବ୍ୟଙ୍ଗାତ୍ମକ ରୀତିରେ ଗାଳ୍ପିକ ମିଛବାଘ ପୁସ୍ତକରେ ପ୍ରଦର୍ଶନ କରିଛନ୍ତି । ବିଷ୍ଣୁମାୟା ଗଳ୍ପ ଗ୍ରନ୍ଥରେ ଅବଚେତନ ମନର ଯୌନ ଜିଜ୍ଞାସାକୁ ସେ ସଚେତନତାର ସହ ପ୍ରକାଶ କରିଛନ୍ତି । ବିଷୟାସକ୍ତ ଅସହାୟ ମାନବର ହୃଦୟରେ ଆଧ୍ୟାତ୍ମିକ ଅଭୀପ୍‌ସାର ଜାଗରଣ ଦେଖିବାକୁ ମିଳେ କପୋତ ପକ୍ଷୀ ଗୁରୁ ମୋର, ଅନ୍ୟ ରୂପ ରୂପାନ୍ତର, ପିଙ୍ଗଳା ସେ ଅନ୍ୟ ଜଣେ ଗଳ୍ପ ପୁସ୍ତକରେ । ନୈରାଶ୍ୟବାଦୀ ମାନବ ହୃଦୟରେ ଜୀବନ ପ୍ରତି ମୋହ ସୃଷ୍ଟି କରିବାରେ ସେ ସଫଳ ହୋଇଛନ୍ତି । ଗାଳ୍ପିକ ନୀଳମଣି ଅତିକ୍ରାନ୍ତ ସମାଜବାଦର ଜଣେ ମୁଖ୍ୟ ପୃଷ୍ଠପୋଷକ । ଆଧ୍ୟାତ୍ମିକ ଅଭୀପ୍‌ସା, ଜୀବନବୋଧ, ମାନବବାଦ ତାଙ୍କ ସୃଷ୍ଟିର ସନ୍ଦେଶ । 'ପ୍ରଗାଢ଼ ମାନବିକ ଆବେଗ ଓ ଉଦଗ୍ର ସହାନୁଭୂତି ଶିଳ୍ପୀଙ୍କର ବଡ଼ ଦୁର୍ବଳତା । ତେଣୁ ସ୍ୱଷ୍ଟ ଚରିତ୍ର ସହିତ ସେ ସହଜରେ ଏକାତ୍ମୀୟ ହୋଇଉଠନ୍ତି । ତାଙ୍କ ଜୀବନରେ ବିଚିତ୍ର ସୁଖଦୁଃଖରେ ଅଂଶୀଦାର ହୋଇଯାଆନ୍ତି ।'[୧୬] ହାସ୍ୟ, ବ୍ୟଙ୍ଗ, ଅନ୍ତରାଳରେ କାରୁଣ୍ୟ ନୀଳମଣିଙ୍କ ଗଳ୍ପରେ ଆପେ ଉଙ୍କିମାରି ଉଠେ । ତାଙ୍କର କେତେକ ଗଳ୍ପର ମୁଖ୍ୟ ଭାବ ଗଳ୍ପ

କେନ୍ଦ୍ର ସହିତ ଐକ୍ୟ ପ୍ରତିଷ୍ଠା କରିପାରି ନାହିଁ। ବର୍ଣ୍ଣନା ବହୁଳତା ଯୋଗୁଁ ତାଙ୍କ ଗଳ୍ପଗୁଡ଼ିକ ଅପେକ୍ଷାକୃତ ଦୀର୍ଘ ଓ ଭାଷା ବିନ୍ୟାସ ମଧ୍ୟ କାବ୍ୟିକ। ନୈର୍ବ୍ୟକ୍ତିକ ଓ ବ୍ୟକ୍ତିକ ଶୈଳୀ, ସାଧାରଣ ଓ ଅଭିଜାତ ଭାଷା, ବ୍ୟଞ୍ଜନା ଓ ବର୍ଣ୍ଣନା, କରୁଣ ଓ ହାସ୍ୟରସର ବ୍ୟବହାର ତାଙ୍କ ସୃଷ୍ଟିରେ ପରିଲକ୍ଷିତ ହୁଏ।

ଓଡ଼ିଆ କ୍ଷୁଦ୍ରଗଳ୍ପ ଧାରାର ସମୃଦ୍ଧିରେ ଗାଳ୍ପିକ ବିଭୂତି ଭୂଷଣ ତ୍ରିପାଠୀଙ୍କ ପ୍ରତିଶ୍ରୁତି ପ୍ରଶଂସନୀୟ। ତାଙ୍କ ଗଳ୍ପ ସଂକଳନଗୁଡ଼ିକ ହେଲା– ସେତୁ, ନିଶାନ୍ତ, ଚନ୍ଦନା, ବିଶଲ୍ୟକରଣୀ, ଅହଲ୍ୟା ଓ କେତୋଟି ନିର୍ବାଚିତ ଗଳ୍ପ। ୧୯୫୦ ମସିହା ପୂର୍ବରୁ ସେ ଗଳ୍ପ ରଚନାରେ ମନୋନିବେଶ କରିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ପ୍ରସିଦ୍ଧି ଲାଭ କରିଥିଲେ। ବ୍ୟକ୍ତିଗତ, ବୃତ୍ତିଗତ ଜୀବନର ସୀମିତ ଅନୁଭୂତି କେବଳ ହୋଇଛି ତାଙ୍କ ଗଳ୍ପର ବିଷୟବସ୍ତୁ। ତ୍ରିପାଠୀଙ୍କ ଗଳ୍ପରେ ପ୍ରଥା ପରମ୍ପରା, ସଂସ୍କୃତି ପ୍ରତି ପ୍ରଗାଢ଼ ଅନୁରକ୍ତି ଭାବ ପ୍ରକାଶ ପାଇଛି। ହେଡ୍‌ମାଷ୍ଟର, ହିଲ୍‌ସାହେବ, ପ୍ରତିକାର, ପୁନରାବୃତ୍ତି ପ୍ରଭୃତି ଗଳ୍ପରେ ଗାଳ୍ପିକ ତ୍ରିପାଠୀଙ୍କ ଗୁରୁବାଦର ଆଭିମୁଖ୍ୟ ସୁସ୍ପଷ୍ଟ। ଦକ୍ଷ ଓ ଉଚ୍ଚ ପ୍ରଶାସନିକ ଅଧିକାରୀ ଭାବେ ପ୍ରଶାସନ ସମ୍ବନ୍ଧୀୟ ଅଭିଜ୍ଞତାକୁ ଭିତ୍ତିକରି ତାଙ୍କ ଗଳ୍ପଗୁଡ଼ିକ ହେଲା ମିଶାଣରେ ଭୁଲ୍, ସାମାନ୍ୟ-ଅସାମାନ୍ୟ, ଚିରାକମିଜ, ଏକାନ୍ତ ଗୋପନୀୟ, କାଲି ଆଜି ଓ ଆସନ୍ତାକାଲି। ବିଭୂତି ତ୍ରିପାଠୀ ମାମୁଲି କଥାକୁ ନେଇ ଯେମିତି ଗଳ୍ପ ରଚନା କରିଛନ୍ତି ତାଙ୍କ ଜୀବନ ଜୀବିକା ପରିଧି ମଧ୍ୟରେ ଆସିଥିବା ଡ୍ରାଇଭର, ପିଅନ, ଚାକର, ପୂଜାରୀ ଆଦି ନିମ୍ନ ଶ୍ରେଣୀୟ ଲୋକମାନଙ୍କୁ ସେ ଚରିତ୍ର ରୂପେ ବାଛି ନେଇଛନ୍ତି। ତାଙ୍କ ସୃଷ୍ଟିରେ ମଧ୍ୟବିତ୍ତ, ଉଚ୍ଚମଧ୍ୟବିତ୍ତ ସମାଜର ଚରିତ୍ର ଅଧିକ ଦେଖାଯା'ନ୍ତି। ପଶୁପକ୍ଷୀମାନଙ୍କୁ ଚରିତ୍ର ରୂପେ ଗ୍ରହଣ କରି ମନୁଷ୍ୟର ସ୍ୱରୂପ ପ୍ରକାଶ କରିବାରେ ତାଙ୍କର କାମଧେନୁ, ମୃଗୟା, ଶାସ୍ତି, ପ୍ରତିଦାନ ପ୍ରଭୃତି ଗଳ୍ପ ଲୋକପ୍ରିୟ। ଗଳ୍ପରେ ତାଙ୍କ ସମାଲୋଚନାର ଭାଷା କର୍କଶ, କଠୋର ନୁହେଁ; ବରଂ ଭଦ୍ର, ମଧୁର। ବର୍ଣ୍ଣନା ଓ ବ୍ୟଞ୍ଜନାର ପରିମିତ ପରିସରରେ ରଚିତ ତାଙ୍କ ଗଳ୍ପ ଅପରିମିତ ଭାବଭାବନାର ବାହକ। 'ଶ୍ରୀ ବିଭୂତି ଭୂଷଣ ତ୍ରିପାଠୀ ଗାଳ୍ପିକ ହିସାବରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅତି ପରିଚିତ ଓ ଲବ୍ଧପ୍ରତିଷ୍ଠ। ଗଳ୍ପ ଲେଖାକୁ ପେଶା ଭାବରେ ଗ୍ରହଣ ନ କରି ସେ ତାକୁ ତାଙ୍କ କଳାପ୍ରିୟ ଜୀବନର ମର୍ମ ପ୍ରାଣ ବୋଲି ମନେ କରନ୍ତି। ତାଙ୍କ ଗଳ୍ପଗୁଡ଼ିକର

ବିଶେଷତ୍ୱ ହେଲା– ଅନ୍ୟ ଆଖିରେ ସଚରାଚର ପଡ଼ିପାରୁ ନଥିବା ଦୈନନ୍ଦିନ ଜୀବନର ସାଧାରଣ ଘଟଣା ମଧ୍ୟରେ ଏକ ସୂକ୍ଷ୍ମ ଓ ଚିରନ୍ତନ ରୂପ ଫୁଟାଇବା, ଯାହାକି ପାଠକ ଚିତ୍ତକୁ ଅଭିଭୂତ କରେ । କ୍ଷୁଦ୍ର ପରିସର ମଧ୍ୟରେ ପ୍ରତ୍ୟେକଟି ଗଳ୍ପ ସ୍ୱୟଂସମ୍ପୂର୍ଣ୍ଣ ଓ ତାହା କାଳୋତ୍ତୀର୍ଣ୍ଣ ହେବାର ଦାବି ରଖେ ।'[୧୬] ଆକସ୍ମିକ ଆରମ୍ଭ, ଜିଜ୍ଞାସିତ ପରିଣତି, ସ୍ୱାଭାବିକ ବର୍ଣ୍ଣନା ତାଙ୍କ ଗଳ୍ପ କଳାର ବିଶେଷତ୍ୱ ।

ଏହି ସମୟରେ ଆଉ ଜଣେ ଜନପ୍ରିୟ ଗାଳ୍ପିକ ହେଉଛନ୍ତି ଅଚ୍ୟୁତାନନ୍ଦ ପତି । ତାଙ୍କ ଗଳ୍ପ ସଂକଳନଗୁଡ଼ିକ ହେଲା– ଅଶୁଭ ପୁତ୍ରର କାହାଣୀ, ଉଗ୍ରସେନ ଉବାଚ, ନିଆଁ ଜଳୁଛି, ସ୍ନାୟୁ ଓ ସନ୍ନ୍ୟାସୀ ପ୍ରଭୃତି । ସମାଜର ଅନ୍ୟାୟ, ଅତ୍ୟାଚାର ପ୍ରତି ତାଙ୍କର ସ୍ୱର ଯେଭଳି ଶାଣିତ, ଦଳିତ ଓ ଅବହେଳିତ ନିମନ୍ତେ ସେ ମଧ୍ୟ ସମ୍ବେଦନଶୀଳ । ବଫୁନ, ଡାଆଁଣୀ ଇତ୍ୟାଦି ଗଳ୍ପରେ ଅବହେଳିତ ଚରିତ୍ରର ଅବତାରଣା କରାଯାଇଛି । ପେଚା, କୁକୁର, ମାଙ୍କଡ଼ ଭଳି ମାନବେତର ଚରିତ୍ର ମାଧ୍ୟମରେ ସଭ୍ୟ ଶିକ୍ଷିତ ମାନବର ଅନ୍ତର କଥାକୁ ପ୍ରତୀକାତ୍ମକ ରୂପେ ବ୍ୟକ୍ତ କରିଛନ୍ତି । ଚରିତ୍ର ଉପରେ ବିଶେଷ ପ୍ରାଧାନ୍ୟ ଦେଇ ସେ ଗଳ୍ପ ରଚନା କରିଛନ୍ତି । ସରମା, ପଦ୍ମପୋଖରୀ, ସଭ୍ୟତାର ସ୍ୱପ୍ନ ଆଦି ଗଳ୍ପରେ ନାରୀର ମନକୁ ବିଶ୍ଳେଷଣ କରାଯାଇଛି । ଗ୍ରାମୀଣ ଭାଷା, ଉପମା, ରୂପକଳ୍ପ ପ୍ରୟୋଗ ତାଙ୍କ ଗଳ୍ପରେ ସରସତା ଭରି ଦେଇଛି । ସହଜ ସରଳ କଥାରେ ଯୁକ୍ତିଯୁକ୍ତ ସଂଳାପ, ଶ୍ଳେଷାତ୍ମକ ଅଭିବ୍ୟକ୍ତି, ନାଟକୀୟତା ତାଙ୍କ ଗଳ୍ପର ପ୍ରଧାନ ଉପାଦାନ ।

ବୌଦ୍ଧିକ ରଚନାଶୈଳୀକୁ ଆପଣାର କରିଥିବା ଗାଳ୍ପିକ ହେଉଛନ୍ତି ଚନ୍ଦ୍ରଶେଖର ରଥ । ଅନେକ ବନ୍ୟାପରେ, ଅଶ୍ୱାରୋହୀର ଗଳ୍ପ, ସମ୍ରାଟ ଓ ଅନ୍ୟମାନେ, ଅନ୍ୟ ଏକ ସକାଳ, ସବୁଯାକ ସ୍ୱପ୍ନ, ଏତେ ପାଖରେ ସମୁଦ୍ର, ବିକ୍ରି ପାଇଁ ଫୁଲମାଳ ଇତ୍ୟାଦି ଗଳ୍ପ ସଂକଳନ ତାଙ୍କ କର୍ତ୍ତୃକ ରଚିତ । ଜୀବନଧର୍ମୀ ଭଗବତ ବିଶ୍ୱାସ ଉପରେ ସେ ଅଧିକ ଧ୍ୟାନଶୀଳ ହୋଇ ସୃଷ୍ଟି ସର୍ଜନା କରିଛନ୍ତି । ସମ୍ରାଟ, ଘରଠିକଣା, ସ୍ୱପ୍ନଭଙ୍ଗ ଆଦି ଗଳ୍ପରେ ଆଧୁନିକ ମାନବର ଅସହାୟତାକୁ ସେ ପ୍ରଦର୍ଶନ କରିଛନ୍ତି । ମଣିଷର ଦୁଃଖ ଦୁର୍ଦ୍ଦଶା, କାରୁଣ୍ୟର ଚିତ୍ର ଦେଖିବାକୁ ମିଳେ ତାଙ୍କ ଭୋଗଦଖଲ, ଦୁର୍ଦ୍ଦିନ ପ୍ରଭୃତି ଗଳ୍ପରେ । ଅବଚେତନ ମନକୁ ବିଶ୍ଳେଷଣ କରି ମଣିଷର ହତାଶା, ବିଷାଦ, ଦୁଃଖଦ ମୁହୂର୍ତ୍ତର କଥାକୁ ଜନ୍ମାନ୍ତର, କୁବ୍‌ଜା, ଶାବକ ଇତ୍ୟାଦି ଗଳ୍ପରେ

ସେ କହିଛନ୍ତି । ଚନ୍ଦ୍ରଶେଖରଙ୍କ ଗଳ୍ପରଚନା ପରମ୍ପରା ଶୈଳୀ ବହିର୍ଭୂତ । ଗଳ୍ପ କାହାଣୀ ବିହୀନ ହେଲେ ମଧ୍ୟ କଥନ ଶୈଳୀକୁ ସେ ଗୁରୁତ୍ୱ ଦେଇଛନ୍ତି । ଦାର୍ଶନିକ ଦୃଷ୍ଟିଭଙ୍ଗୀ, କାବ୍ୟିକ ଭାଷାଶୈଳୀ, ଭାବଧର୍ମୀ ବର୍ଣ୍ଣନା ତାଙ୍କ ସୃଷ୍ଟିକୁ ମହତ୍ତ୍ୱପୂର୍ଣ୍ଣ କରିଛି ।

ଓଡ଼ିଆ ଗଳ୍ପକୁ ବୈଚିତ୍ର୍ୟମୟ କରିବାରେ ଆଉଜଣେ ଗାଳ୍ପିକ ହେଲେ କୃଷ୍ଣପ୍ରସାଦ ମିଶ୍ର । ମୌନାବତୀର ରାତ୍ରି, କ୍ରୀତଦାସୀର କାବ୍ୟ, ନାଏଗ୍ରା ଓ ଦେବଯାନୀ, ଭୃଗୁସଂହିତା, ଅରଣ୍ୟ ଓ ଉପବନ ଇତ୍ୟାଦି ଗଳ୍ପ ସଂକଳନରେ ତାଙ୍କ ଗାଳ୍ପିକ ଜୀବନର ସିଦ୍ଧି ଓ ବିଧି ପ୍ରକାଶ ପାଇଛି । ସୁଖ-ଦୁଃଖ, ଆନନ୍ଦ-ବିଷାଦ ପରି ମଣିଷ ଜୀବନର ଭଲ ମନ୍ଦ କଥାକୁ ଭିତ୍ତି କରି ତାଙ୍କ ସୃଷ୍ଟି ପରିକଳ୍ପିତ । ଆଧୁନିକ ମଣିଷର ଯୌନଚେତନା, ଅସହାୟତା ପରି ବିଭିନ୍ନ ଭାବଭାବନାକୁ ସେ ସୂକ୍ଷ୍ମ ଦୃଷ୍ଟିରେ ବର୍ଣ୍ଣନା କରିଛନ୍ତି । ଗାଳ୍ପିକ ମିଶ୍ର ତାଙ୍କ ଗଳ୍ପରେ କାହାଣୀ ଅପେକ୍ଷା ଚରିତ୍ରକୁ ପ୍ରାଧାନ୍ୟ ଦେଇଛନ୍ତି । ଚରିତ୍ରର ମନ ଜଗତକୁ ସେ ତନ୍ନ ତନ୍ନ କରି ପରୀକ୍ଷଣ କରିଛନ୍ତି । ବ୍ୟକ୍ତି ଓ ସମାଜ ସଚେତନତାର ଭାବ ତାଙ୍କ ଗଳ୍ପରେ ଦେଖିବାକୁ ମିଳେ । ନିଜ ଦେଶର ସଭ୍ୟତା, ସଂସ୍କୃତି ମୂଲ୍ୟବୋଧକୁ ସେ ଗଭୀର ଭାବେ ଅନୁଭବ କରିଛନ୍ତି । ଭଗବତ ବିଶ୍ୱାସ ପ୍ରତି ଦୃଢ଼ ଆସ୍ଥା ସ୍ଥାପନ କରିଛନ୍ତି । ଅଶ୍ୱାରୋହୀ, ଭୃଗୁସଂହିତା ଗଳ୍ପରେ ସତ୍ୟ ଓ ଆଦର୍ଶର ସ୍ତୁତିଗାନ କରିଛନ୍ତି । ଆଦର୍ଶ ଓ ଦାର୍ଶନିକ ଚେତନା ତାଙ୍କ ସୃଷ୍ଟିରେ ସଂଶ୍ଳିଷ୍ଟ ହୋଇଥିଲେ ମଧ୍ୟ ବେଳେବେଳେ ଏହାର ମାତ୍ରା ଅତିରିକ୍ତ ହେବା ପରି ଜଣାପଡ଼େ । ତାଙ୍କ ଗଳ୍ପର ଚରିତ୍ରମାନେ ଓଡ଼ିଶାର ପୃଷ୍ଠଭୂମିରେ ରଚିତ ହୋଇଥିଲେ ମଧ୍ୟ ଜାତୀୟ, ଅନ୍ତର୍ଜାତୀୟ ଭାବଭୂମିର କଥା କହିବାରେ ମୁଖର । କୃଷ୍ଣପ୍ରସାଦଙ୍କ ଗଳ୍ପରେ ଦାର୍ଶନିକ ଚେତନା, ବିଶ୍ଳେଷଣଧର୍ମୀ ବର୍ଣ୍ଣନା, ଆଧ୍ୟାତ୍ମିକ ଅନ୍ୱେଷା, ବିଷୟବସ୍ତୁ ଓ ଚରିତ୍ର ଚୟନରେ ନୂତନତା ତାଙ୍କୁ ପ୍ରସିଦ୍ଧି ଦେଇଛି ।

ବିଂଶ ଶତାବ୍ଦୀର ଉତ୍ତର ଷାଠିଏର ଜଣେ ପ୍ରୟୋଗବାଦୀ ଗାଳ୍ପିକ ହେଲେ ରବି ପଟ୍ଟନାୟକ । ତାଙ୍କ ଗଳ୍ପ ସଂକଳନଗୁଡ଼ିକ ହେଲା– ଅସାମାଜିକର ଡାଏରୀ, ଅନ୍ଧ ଗଳିର ଅନ୍ଧକାର, ରାଗତୋଡ଼ି, ବହୁରୂପୀ, ହିରଣ୍ୟଗର୍ଭ, ବିଷୁବରେଖା, ରାଜାରାଣୀ, ବନ୍ଧ୍ୟା ଗାନ୍ଧାରୀ, ଅମରୀଲତା, ବିଚିତ୍ରବର୍ଣ୍ଣା ପ୍ରଭୃତି । ଅସାମାଜିକର ଡାଏରୀ ଗ୍ରନ୍ଥରେ କେତୋଟି ରେଖାଧର୍ମୀ ପରୀକ୍ଷାମୂଳକ ଗଳ୍ପ ସ୍ଥାନ ପାଇଛି ।

ମନସ୍ତତ୍ତ୍ୱ ଓ ଆତ୍ମକଥନ ଶୈଳୀରେ ସେ ମଣିଷର ଅସଲ ମୁଖାକୁ ଖୋଲି ତା'ର ଅସହାୟତା, ନିଃସଙ୍ଗତାକୁ ଦେଖାଇଛନ୍ତି । ରବି ପଟ୍ଟନାୟକଙ୍କ ଗଳ୍ପରେ ନାରୀର ବହୁବିଧ ରୂପ ଦେଖିବାକୁ ମିଳେ । ରୂପକଳ୍ପ, ପ୍ରତୀକକୁ ନେଇ ସେ ଆଭାସଧର୍ମୀ ଗଳ୍ପ ଲେଖିଛନ୍ତି । ମିନି ବା ଅତି ଛୋଟ ଗଳ୍ପ ରଚନା କରିବାରେ ସେ ମଧ୍ୟ ଥିଲେ ପାରଙ୍ଗମ । ପ୍ରଥା ପରମ୍ପରାକୁ ସେ ଖୁବ୍ ଭଲ ପାଉଥିଲେ । ସେଥିପାଇଁ ତାଙ୍କ ସମୟର ଅନ୍ୟ ଗାଳ୍ପିକମାନଙ୍କଠାରୁ ସେ ବାରିହୋଇ ପଡୁଥିଲେ । "ପଶ୍ଚିମୀ କଥାସାହିତ୍ୟରୁ ଧାର ଉଧାର ଆଣି ମଣିଷର ନିଃସଙ୍ଗତା, ମୃତ୍ୟୁଚେତନା, ନାୟକ ନାୟିକାମାନଙ୍କର ନିଜ ସହ ନିଜର ଛାୟା ଯୁଦ୍ଧର ଚିତ୍ରାଙ୍କନ କରି ରବି ପଟ୍ଟନାୟକ ତାଙ୍କର ଅନ୍ୟ ସମସାମୟିକ କଥାଶିଳ୍ପୀମାନଙ୍କ ଭଳି 'ଆଧୁନିକ' ହେବାକୁ କେବେ ଚାହିଁ ନଥିଲେ । ବ୍ୟକ୍ତିକୁ ସେ ଯେପରି ସମାଜଠାରୁ ବିଛିନ୍ନ କରି ଦେଖିବାକୁ ଚାହିଁ ନାହାନ୍ତି; ଗଳ୍ପକୁ ସମସ୍ୟାଠାରୁ ଅଲଗା କରି ଚିହ୍ନିବାକୁ କିମ୍ୱା ଚିହ୍ନାଇବାକୁ କେବେ ଯତ୍ନ କରିନାହାନ୍ତି । ସେ କୌଣସି ରାଜନୈତିକ ମତବାଦର ପୃଷ୍ଠପୋଷକତା କରିନଥିଲେ କିନ୍ତୁ ସାମାଜିକ ମଣିଷ ପ୍ରତି ମମତା ଓ ଅନୁରକ୍ତିରେ କୌଣସି ଶିଥିଳତା ବା ଅନ୍ୟମନସ୍କତା ସହ୍ୟକରି ପାରୁନଥିଲେ ।"[୧୬] ତାଙ୍କ ଗଳ୍ପ କଥନ ବିସ୍ତାର ଅପେକ୍ଷା ତୀକ୍ଷ୍ଣତାକୁ ଆପଣେଇ ନେଇଛି । ଚିରନ୍ତନ ସତ୍ୟ ଉଦ୍‌ଘାଟନରେ ସେ ସର୍ବଦା ପ୍ରୟାସ କରିଛନ୍ତି । ଆତ୍ମଜିଜ୍ଞାସା, କାବ୍ୟିକ ଭାବାବେଗ, ବ୍ୟଞ୍ଜନାତ୍ମକ ଭାଷା ତାଙ୍କ ସୃଷ୍ଟିକୁ ଅନନ୍ୟ କରିଛି ।

ନାରୀ ମନସ୍ତତ୍ତ୍ୱକୁ ବାସ୍ତବରୂପେ ଚିତ୍ରଣ କରିବାରେ ସଫଳ ହୋଇଥିବା ଗାଳ୍ପିକା ହେଉଛନ୍ତି ବୀଣାପାଣି ମହାନ୍ତି । ୧୯୫୮ ମସିହାରେ ତାଙ୍କର ପ୍ରଥମ ଗଳ୍ପ 'ଗୋଟିଏ ରାତ୍ରିର କାହାଣୀ' ପ୍ରଜାତନ୍ତ୍ରର ରବିବାର ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଥିଲା । ନବତରଙ୍ଗ, ପାନ୍ଥଶାଳା ଓ ରକ୍ତକରବୀ, ଅନ୍ୟ ଅରଣ୍ୟ, କସ୍ତୁରୀ ମୃଗ ଓ ସବୁଜ ଅରଣ୍ୟ, ତଟିନୀର ତୃଷା, ସାୟାହ୍ନର ସ୍ୱର, କାଳାନ୍ତର, ଅନ୍ଧକାରର ଛାଇ, ଆରୋହଣ, ମଧ୍ୟାନ୍ତର, ବସ୍ତ୍ରହରଣ, ପାଟଦେଈ, ଶକୁନିର ଛକା ପ୍ରଭୃତି ଗଳ୍ପଗ୍ରନ୍ଥର ସେ ସ୍ରଷ୍ଟା । ଆଧୁନିକ ସମାଜର ବିଭିନ୍ନ ଦିଗ, ମାନବର ବ୍ୟର୍ଥତାବୋଧ, ଆର୍ଥିକ ସଙ୍କଟ, ନଗ୍ନ ବାସ୍ତବତାକୁ ନେଇ ଗାଳ୍ପିକା ମହାନ୍ତି ଗଳ୍ପ ରଚନା କରିଛନ୍ତି । ନାରୀ

ହୃଦୟର ସ୍ନେହ, ତ୍ୟାଗ, ପ୍ରେମ, ପ୍ରଣୟକୁ ସେ ପ୍ରାୟତଃ ଗୁରୁତ୍ୱ ଦେଇଛନ୍ତି । ନାରୀ ଚରିତ୍ର ପ୍ରତି ବୀଣାପାଣି ମହାନ୍ତି ବିଶେଷ ସମ୍ବେଦନଶୀଳ ହୋଇଛନ୍ତି । ତଟିନୀର ତୃଷ୍ଣା, ଦୂର ପର୍ବତ, ନାଉଗଛ ଇତ୍ୟାଦି ଗଳ୍ପରେ ସେ ନାରୀ ଜୀବନର କାରୁଣ୍ୟ, ବିଷାଦ, ସହନଶୀଳତା, ଆଦର୍ଶବାଦକୁ ଦର୍ଶାଇଛନ୍ତି । ନାତିଦୀର୍ଘ ବର୍ଣ୍ଣନା, କାବ୍ୟିକ ଭାଷା, ଜୀବନଜିଜ୍ଞାସା, ସାମାଜିକ ଅଙ୍ଗୀକାର ତାଙ୍କ ଗଳ୍ପ ରଚନାରେ ପରିଦୃଷ୍ଟ ହୁଏ ।

୧୯୫୯ ମସିହାରେ ଓଡ଼ିଆ ଗଳ୍ପାକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କର ଆବିର୍ଭାବ ହୋଇଛି । ଯିଏ ଓଡ଼ିଆ ଗଳ୍ପପ୍ରେମୀକୁ ଏକ ନୂତନ ପ୍ରଭାତର ବାର୍ତ୍ତା ଜଣାଇଛନ୍ତି । ଏ ପ୍ରଭାତ ପାରମ୍ପରିକ ପ୍ରାତଃକାଳ ପରି ସରଳ ବା କୋମଳ ନୁହେଁ; ଏହା ଜଟିଳ ଓ ନିଷ୍ଠୁର ବାସ୍ତବର ଦ୍ୟୋତକ । ଏହି ପ୍ରତିଭାଦୀପ୍ତ ଗାଳ୍ପିକ ହେଉଛନ୍ତି କାଳଜୟୀ ସ୍ରଷ୍ଟା ଶାନ୍ତନୁ କୁମାର ଆଚାର୍ଯ୍ୟ । ଗାଳ୍ପିକ ଆଚାର୍ଯ୍ୟ ନିଃସଂକୋଚରେ ସାଂପ୍ରତିକ ମାନବର କୃତ୍ରିମ ଆବରଣକୁ ଅପସାରଣ କରି ତା'ର ବିଚିତ୍ର ଅଭ୍ୟନ୍ତରୀଣ ସ୍ୱରୂପକୁ ଉଦ୍‌ଘାଟନ କରିଛନ୍ତି । ସେ ଜଣେ ସାଧାରଣ ଲେଖନୀଧାରୀ କଥାଶିଳ୍ପୀ ନୁହଁନ୍ତି; ତାଙ୍କ କଲମର ମୁନ ବେଶ୍ ଶାଣିତ । ଆଧୁନିକ ଯୁଗ ମନୁଷ୍ୟର ସ୍ୱରୂପକୁ ସାହିତ୍ୟିକ ଅସ୍ତ୍ରୋପଚାର ମାଧ୍ୟମରେ ଉନ୍ମୋଚନ କରି ସତେଯେପରି ସେ ସାମାଜିକ ବ୍ୟାଧି ଓ ଯୁଗ ଯନ୍ତ୍ରଣାକୁ ପ୍ରଶମିତ କରିବାର ଦୁରୂହ ପଦକ୍ଷେପ ନେଇଛନ୍ତି ।

ଶାନ୍ତନୁ ଆଋର୍ଯ୍ୟଙ୍କ ଶିଳ୍ପୀ ପ୍ରତିଭା ଅନସ୍ୱୀକାର୍ଯ୍ୟ । ବହୁମୁଖୀ ଭାବସଂପଦର ସୁମଞ୍ଜୁଳ ସଂଯୋଜନା ତାଙ୍କ ସୃଷ୍ଟିସଂସାରର ନିଦର୍ଶନ । ଶାନ୍ତନୁଙ୍କ କୃତିତ୍ୱର ପରାକାଷ୍ଠାକୁ ସ୍ୱଷ୍ଟ ଅନୁଧ୍ୟାନ କରାଯାଇପାରେ ତାଙ୍କ ଭାଷା ପ୍ରୟୋଗରେ । ଏହା ସାବଲୀଳ ଗତିରେ ଗତିଶୀଳ; କିନ୍ତୁ ବ୍ୟଞ୍ଜନାରେ ପରିପୂର୍ଣ୍ଣ । ଭାଷାଶୈଳୀ ଉପସ୍ଥାପନାରେ ଫକୀରମୋହନଙ୍କ ଦ୍ୱାରା ପ୍ରଭାବିତ ହୋଇ ମଧ୍ୟ ଗାଳ୍ପିକ ଆଚାର୍ଯ୍ୟ ତାଙ୍କଠାରୁ ଯେ କେଇପାଦ ଆଗରେ କହିବାକୁ ଦ୍ୱିଧାବୋଧ ହୁଏ ନାହିଁ । ସେହିପରି ତାଙ୍କର ପୂର୍ବସୂରୀ ସୁରେନ୍ଦ୍ର ମହାନ୍ତି, ମନୋଜ ଦାସ, କିଶୋରୀଚରଣ ଦାସ, ଅଖିଳ ମୋହନ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ ପ୍ରମୁଖଙ୍କ ଅନୁଗାମୀ ହୋଇ ମଧ୍ୟ ସ୍ୱକୀୟ ମୌଳିକ ପ୍ରତିଭା ବଳରେ ତାଙ୍କ ରଚନାଶୈଳୀ ଯେ ସଂପୂର୍ଣ୍ଣ ଅଭିନବ ଏକଥା ଅସ୍ୱୀକାର କରାଯାଇ ନ ପାରେ ।

## ଅନ୍ତଟୀକା :


୧. ବୈଷ୍ଣବ ଚରଣ ସାମଲ–ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ (ପ୍ରଥମ ଭାଗ), ପୃ.୮୮ ।

୨. ବୈଷ୍ଣବ ଚରଣ ସାମଲ–ଓଡ଼ିଆ ଗଳ୍ପ : ଗତି ଓ ପ୍ରକୃତି, ପୃ.୨୧ ।

୩. ନଟବର ସାମନ୍ତରାୟ–ଓଡ଼ିଆ ସାହିତ୍ୟର ଇତିହାସ, ପୃ.୫୩୨ ।

୪. ଗୋପାଳ ଚନ୍ଦ୍ର ମିଶ୍ର–ଚଳିତ ଶତାବ୍ଦୀର ଭାରତୀୟ ସାହିତ୍ୟ, ପୃ.୬୨୨ ।

୫. କାଳିନ୍ଦୀ ଚରଣ ପାଣିଗ୍ରାହୀ–ମୋ କଥାଟି ସରିନାହିଁ, ପୃ.୨ ।

୬. କୋଣାର୍କ, ୯୪ତମ ସଂଖ୍ୟା, ୧୯୯୪, ପୃ.୧୦୦ ।

୭. ତତ୍ରୈବ ।

୮. ସଚ୍ଚିଦାନନ୍ଦ ରାଉତରାୟ–ସାହିତ୍ୟରେ ମୂଲ୍ୟବୋଧ, ପୃ.୧ ।

୯. ପୂର୍ଣ୍ଣାନନ୍ଦ ଦାନୀ–ଓଡ଼ିଆ ଗଳ୍ପ ପ୍ରସଙ୍ଗ, ପୃ.୭୪-୭୫ ।

୧୦. ବୈଷ୍ଣବ ଚରଣ ସାମଲ–ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ (ଦ୍ୱିତୀୟଭାଗ), ପୃ.୨୭୦ ।

୧୧. ତତ୍ରୈବ, ପୃ.୨୭୯ ।

୧୨. ବସନ୍ତ କୁମାର ଶତପଥୀ–ଗଙ୍ଗା ଓ ଗାଙ୍ଗୀ, ପୃ.୧୭୯ ।

୧୩. କୋଣାର୍କ, ୫୦ଶ ସଂଖ୍ୟା, ୧୯୮୩, ପୃ.୪୭ ।

୧୪. ନିତ୍ୟାନନ୍ଦ ଶତପଥୀ–ଗଳ୍ପ ଓ ଗାଳ୍ପିକ, ପୃ.୧୨୦ ।

୧୫. ଦାଶରଥି ଦାସ–ସାହିତ୍ୟ ସନ୍ଧାନ, ପୃ.୨୧୧ ।

୧୬. ବିଭୂତି ଭୂଷଣ ତ୍ରିପାଠୀ–ସେତୁ, ପ୍ରକାଶକ ଅଭିମତ ।




# ସ୍ରଷ୍ଟା ଜୀବନ ଓ ସୃଷ୍ଟି ସର୍ଜନ

ସୁବିଶାଳ ଦୁନିଆର କର୍ମବ୍ୟସ୍ତ ଓ ଜଞ୍ଜାଳଗ୍ରସ୍ତ ଜୀବନରେ କେହି କାହାରି ଖବର ରଖିବା କଷ୍ଟକର ବ୍ୟାପାର; କିନ୍ତୁ କେତେକ ବ୍ୟକ୍ତିଙ୍କୁ ମନେ ରଖିବା ଅପରିହାର୍ଯ୍ୟ । କାରଣ ସେମାନେ ନିଜ ଜୀବନକୁ ତିଳତିଳ ଭାବେ ଦଗ୍ଧ କରି ମାନବ ସମାଜକୁ ଅମୃତର ସନ୍ଧାନ ଦିଅନ୍ତି । ଏଇମାନେ ହେଉଛନ୍ତି କାଳଜୟୀ ପୁରୁଷ । ଯେଉଁମାନଙ୍କ ଜୀବନାନୁଭୂତିର କାହାଣୀ ଶୁଣିବାକୁ ମାନବ ସର୍ବଦା ଉତ୍କଣ୍ଠିତ । ତନ୍ମଧ୍ୟରୁ ଓଡ଼ିଆ ଗଳ୍ପ ସାହିତ୍ୟର ଶ୍ରେଷ୍ଠ ସାରଥି ଶାନ୍ତନୁ କୁମାର ଆଚାର୍ଯ୍ୟ ଅନ୍ୟତମ ।

## ଜନ୍ମରହସ୍ୟ

୧୯୩୩ ମସିହା ମଇ ମାସ ୧୫ ତାରିଖରେ ଶାନ୍ତନୁ ଆଚାର୍ଯ୍ୟଙ୍କ ଜନ୍ମ ହୁଏ କଲିକତାର ମୋମିନପୁରସ୍ଥିତ ତାଙ୍କ ଅଜାଙ୍କ ବାସଭବନରେ । ଅଜା କୁଳମଣି ମିଶ୍ର ହେଉଛନ୍ତି ଓଡ଼ିଆ । ସାମରିକ ଚାକିରିରୁ ଅବ୍ୟାହତି ପାଇ କଲିକତା କର୍ପୋରେସନ୍‌ରେ ଇଞ୍ଜିନିୟରିଂ ଅଫିସର୍ ଭାବେ ଯୋଗଦେଇଥିବା ସମୟରେ କଲିକତାର ମୁସଲମାନ ବହୁଳ ମୋମିନପୁର ଠାରେ ବାସ କରୁଥାନ୍ତି ।

କଟକ ଜିଲ୍ଲାର ସଦର ଥାନାନ୍ତର୍ଗତ ସିଦ୍ଧେଶ୍ୱରପୁର ହେଉଛି ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ପୈତୃକ ଗ୍ରାମ । ପିତା ଅନନ୍ତ ଚରଣ ଆଚାର୍ଯ୍ୟ ଜଣେ ସଚ୍ଚୋଟ ଗାନ୍ଧିବାଦୀ ଓ ଆଦର୍ଶ ଶିକ୍ଷକ । ଧର୍ମପରାୟଣା ମାତା କୃଷ୍ଣପ୍ରିୟା ଦେବୀଙ୍କର ସେ ହେଉଛନ୍ତି ତୃତୀୟ ଗର୍ଭର ସନ୍ତାନ । ତାଙ୍କ ଜନ୍ମ ପରେ କୃଷ୍ଣପ୍ରିୟାଦେବୀ ଆଉ ଦୁଇଟି ପୁତ୍ର ସନ୍ତାନର ଜନ୍ମଦାତ୍ରୀ ହୁଅନ୍ତି । ଦୁର୍ଭାଗ୍ୟବଶତଃ ଶାନ୍ତନୁ ଆଚାର୍ଯ୍ୟଙ୍କର

ଅଗ୍ରଜା ଓ ଅଗ୍ରଜ ଯଥାକ୍ରମେ ଜନ୍ମର ବାରବର୍ଷ ଓ ଏକୋଇଶି ଦିନରେ ଇହଧାମ ତ୍ୟାଗ କରିଥିଲେ । ତାଙ୍କ ଜନ୍ମ ଐଶ୍ୱରିକ ଘଟଣାଶ୍ରିତ ଥିଲା ।[୧] ଏଥିପାଇଁ ବୋଧହୁଏ ପରବର୍ତ୍ତୀ ସମୟରେ ତାଙ୍କ କୃତିରେ ପ୍ରଗାଢ଼ ଆଧ୍ୟାତ୍ମିକ ଅଭୀପ୍ସାର ସ୍ୱର ଶ୍ରୁତିଗୋଚର ହୁଏ ।

ତାଙ୍କ ବଡ଼ଭାଇ କଟକ ଜିଲ୍ଲା ଅନ୍ତର୍ଗତ ପାର୍ବତୀପୁର ଗ୍ରାମରେ ଅଜା କୁଳମଣି ମିଶ୍ରଙ୍କ ଘରେ ଜନ୍ମଗ୍ରହଣ କରିଥିଲେ । ଆନନ୍ଦମୁଖର ଏକୋଇଶା ଦିବସଟି ଦୈବାତ୍ ଲୋତକାପ୍ଲୁତ ଶୋକ ଦିବସରେ ପରିଣତ ହେଲା । ବଡ଼ଭାଇଙ୍କୁ ଦେବୀନଦୀର ବାଲିରେ ସମାଧି ଦେବାକୁ ଯାଉଥିବା ସମୟରେ ମୁସଲମାନମାନଙ୍କ ମହମ୍ମଦ ତାଜିଆ ଗ୍ରାମ ପରିକ୍ରମା ମଧ୍ୟରେ ମିଶ୍ରଙ୍କ ଦାଣ୍ଡରେ ଅଟକିଲା । ମହମ୍ମଦ ତାଜିଆ ଗ୍ରାମର ହିନ୍ଦୁ ମୁସଲମାନ ସମସ୍ତଙ୍କ ଘରେ ବୁଲି ଭୋଗ ପାଇବା ପରମ୍ପରା ଥାଏ । ମହମ୍ମଦ ତାଜିଆର ନେତୃତ୍ୱ ନେଉଥିବା ଗୋଲାପ ମିଆଁଙ୍କ ଆଶ୍ୱାସନାରେ ତାଜିଆ ନିକଟରେ ମହାସମାରୋହରେ ଭୋଗରାଗ ହେଲା । ଦଶମାସ ମଧ୍ୟରେ ମୃତ ପୁତ୍ର ଫେରିଆସିବ ବୋଲି ଗୋଲାପ ମିଆଁ କୁଳମଣି ମିଶ୍ରଙ୍କୁ ଦୃଢ଼ ପ୍ରତିଶ୍ରୁତି ଦେଲେ । ଶାନ୍ତନୁ ଆଚାର୍ଯ୍ୟଙ୍କ ଜନ୍ମ ଗୋଲାପ ମିଆଁର ପ୍ରତିଶ୍ରୁତିକୁ ସତ୍ୟରେ ପରିଣତ କଲା ।[୨]

## ଛାତ୍ର ଜୀବନ

ଶାନ୍ତନୁ ଆଋର୍ଯ୍ୟ କଲିକତା ମାଟିରେ ଜନ୍ମ ହୋଇଥିଲେ ମଧ୍ୟ ତାଙ୍କର ବିକାଶ ହୋଇଛି ଓଡ଼ିଶାର ଜଳବାୟୁରେ । ପାଞ୍ଚବର୍ଷ ବୟସରେ ତାଙ୍କର ବିଦ୍ୟାରମ୍ଭ ହୁଏ କନ୍ଦରପୁର ପ୍ରାଥମିକ ବିଦ୍ୟାଳୟରେ । ସେଠାରେ ତିନିବର୍ଷ ଅଧ୍ୟୟନ କରି ଚତୁର୍ଥଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସିଦ୍ଧେଶ୍ୱରପୁର ମଧ୍ୟ ଇଂରାଜି ବିଦ୍ୟାଳୟରେ ଭର୍ତ୍ତି ହୁଅନ୍ତି । ଚତୁର୍ଥ ଶ୍ରେଣୀରେ ପଢୁଥିବା ସମୟରେ ୧୯୪୨ ମସିହାରେ ତାଙ୍କ ସ୍ନେହମୟୀ ଜନନୀଙ୍କର ଅକାଳ ବିୟୋଗ ହେଲା । ୧୯୪୫ ମସିହା ଜୁଲାଇ ମାସରେ କଟକର ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଯୋଗଦେଇ କୃତିତ୍ୱର ସହିତ ମାଟ୍ରିକ୍ ପାଶ୍ କଲେ । ଏହାପରେ ରେଭେନ୍‌ସା କଲେଜରେ ଆଇ.ଏସ୍‌ସି ଓ ବି.ଏସ୍‌ସି ପଢ଼ିଲେ ।

ତୃତୀୟ ବାର୍ଷିକ ବିଜ୍ଞାନରେ ପଢୁଥିବା ସମୟରେ ଈଶ୍ୱରଙ୍କ ସ୍ଥିତି ନେଇ ସେ ସନ୍ଦିହାନ ହୋଇଉଠିଲେ। ଈଶ୍ୱର ବୋଲି ଯଦି କେହି ଅଛନ୍ତି, ତେବେ ସେ ତାଙ୍କ ଅସ୍ତିତ୍ୱର ପ୍ରମାଣ ଦିଅନ୍ତୁ ବୋଲି ଛାତ୍ର ଶାନ୍ତନୁ ଜିଦ୍‌ଧରି ବସିଲେ। ପାଠପଢ଼ା ଏପରିକି ସବୁକିଛି ପ୍ରତି ସେ ଉଦାସୀନ ଓ ବୀତସ୍ପୃହ ହୋଇପଡ଼ିଲେ। କଲେଜ ଯିବା ବନ୍ଦ କରିଦେଲେ। ନେତିବାଦ ଓ ଅସ୍ତିତ୍ୱବାଦକୁ ନେଇ ତାଙ୍କ ମନରେ ତୀବ୍ର ଅବସାଦ ଦେଖାଦେଲା। ଜୀବନର ମୋହ ତୁଟି ଆସୁଥିବା ସମୟରେ ଠିକ୍ ଦିନ ତିନିଟାବେଳେ ଋଷିକେଶରୁ ଖଣ୍ଡିଏ ଚିଠି ଆସି ପହଞ୍ଚିଲା। ସେ ପୂର୍ବରୁ ଋଷିକେଶର ସ୍ୱାମୀ ଶିବାନନ୍ଦଙ୍କ ସହ ସମସ୍ୟା ସଂପର୍କରେ ପତ୍ରାଳାପ କରୁଥିଲେ ମଧ୍ୟ ତାଙ୍କର ଯୁକ୍ତିବାଦୀ ମନ ଶିବାନନ୍ଦଙ୍କ ବାଣୀକୁ ଗ୍ରହଣ କରିବାକୁ କୁଣ୍ଠିତ ଥିଲା। ଅନ୍ତିମ ମୁହୂର୍ତ୍ତର ଚିଠି ଥିଲା ଭିନ୍ନ ପ୍ରକାରର। ଏହା ମଧ୍ୟରେ କଳା ଓ ନାଲି ଗୁଣ୍ଡର ଦୁଇଟି ଛୋଟ ଛୋଟ ପୁଡ଼ିଆ ରହିଥାଏ। ପୁଡ଼ିଆ ଦୁଇଟିରେ କେଉଁ ଜିନିଷ ଅଛି, ତାହା ବିଷ କି ଅମୃତ ଓ ତା'ର ବ୍ୟବହାର କିପରି କିଛି ନ ବିଚାରି ଛାତ୍ର ଶାନ୍ତନୁ ଦୁଇଟି ଗୁଣ୍ଡକୁ ମିଶାଇ ଗର୍ଭସ୍ଥ କରିଛନ୍ତି। ପ୍ରାୟ ଛଅମାସ ପରେ ସେଦିନ ରାତ୍ରିରେ ଗଭୀର ନିଦ୍ରା ଯାଇଛନ୍ତି। ତହିଁ ପରଦିନ ସକାଳୁ ସେ ଜୀବନର ମୂଲ୍ୟକୁ ଅନୁଭବ କରି ଅସ୍ତିତ୍ୱର ଜୟଗାନ କରିଛନ୍ତି।[୩]

ଉପରୋକ୍ତ ଘଟଣା ଯୋଗୁଁ ସେ ୧୯୫୩ ମସିହାରେ ବି.ଏସ୍‌ସି ପରୀକ୍ଷା ଦେବାରୁ ବଞ୍ଚିତ ହେଲେ। ତା'ପରବର୍ଷ ସର୍ବାଧିକ ନମ୍ବର ରଖି ବି.ଏସ୍‌ସି ପାଶ୍ କଲେ। ୧୯୫୪ ମସିହାରେ କଟକର ଶ୍ରୀରାମଚନ୍ଦ୍ରଭଞ୍ଜ ମେଡିକାଲ କଲେଜରେ ନାମ ଲେଖାଇଲେ। କିନ୍ତୁ ନାମ ଲେଖାଇବାର ପ୍ରଥମ ଦିନ ଲାବୋରଟୋରୀରେ ନିଜ ଗାଁ'ର ରମାନାନୀର ଶବ ଓ ପରେ କାଳିଆବୋଦାରେ ମରିଥିବା ସାଧୁଙ୍କ ଫୁଲ୍‌ଲା ଶବକୁ ପୋଷ୍ଟମର୍ଟମ୍ ହଲ୍‌ରେ ଦେଖି ମନରେ ତାଙ୍କର ବିକାର ଆସିଛି। ଆତ୍ମାର ସେବା ନା ଶରୀରର ବ୍ୟବଚ୍ଛେଦ ପାଇଁ ସେ ଡାକ୍ତର ହେବେ। ଏହି ଦ୍ୱନ୍ଦ୍ୱଟି ତାଙ୍କ ମନୋରାଜ୍ୟକୁ ସଂଶୟାଚ୍ଛନ୍ନ କଲା। ଶେଷରେ ତିନିମାସ ପରେ ଡାକ୍ତରୀ ପାଠ ଛାଡ଼ି ରେଭେନ୍‌ସା କଲେଜରେ ରସାୟନ ଶାସ୍ତ୍ରର ସ୍ନାତକୋତ୍ତର ଶ୍ରେଣୀର ଛାତ୍ର ହେଲେ।[୪]

## ଜୀବିକା

୧୯୫୬ ମସିହାରେ ଏମ୍.ଏସ୍‌ସି ପାଶ୍ କରି ଶାନ୍ତନୁ ଆଚାର୍ଯ୍ୟ ନିଜ ଗ୍ରାମ ସିଦ୍ଧେଶ୍ୱରପୁରର ଗୋପାଳ ସ୍ମୃତି ବିଦ୍ୟାପୀଠରେ ତିନି ମାସ ଶିକ୍ଷକତା କଲେ । ସେହିବର୍ଷ ଆସାମର ଶିବସାଗର ଜିଲ୍ଲାର ଜୟସାଗର କଲେଜରେ କେମେଷ୍ଟ୍ରି ଅଧ୍ୟାପକ ରୂପେ ନିଯୁକ୍ତି ପାଇଲେ । ସେଠୁ ଫେରିଆସି ୧୯୫୭ ମସିହାରେ ସେ ବ୍ରଜରାଜନଗର ଓରିଏଣ୍ଟ୍ ପେପର୍ ମିଲ୍‌ରେ କେମିକାଲ ସାଇଣ୍ଟିଷ୍ଟ୍ ଭାବେ ଯୋଗଦେଲେ । ଏହାପରଠାରୁ ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରେ ଅଧ୍ୟାପକ, ପ୍ରାଧ୍ୟାପକ, ଅଧ୍ୟକ୍ଷ, ଏସ୍.ଇ.ଆର୍.ଟି.ସିର ପ୍ରୋଜେକ୍ଟ ଅଫିସର୍, ୟୁନିସେଫ୍‌ର ଲିଆସନ ଅଫିସର, ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥାର ବିଜ୍ଞାନ ବିଭାଗର ସାଧାରଣ ସଂପାଦକ ପରି ବିଭିନ୍ନ ଅନୁଷ୍ଠାନର ଗୁରୁତ୍ୱପୂର୍ଣ୍ଣ ପଦରେ ରହି ସୁଚାରୁ ରୂପେ କାର୍ଯ୍ୟ ନିର୍ବାହ କରିଛନ୍ତି । ୧୯୯୨ ମସିହା ଜୁନ୍ ୩୦ ତାରିଖରେ ଉତ୍କଳ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ପଦରୁ ଅବସର ନେଇଛନ୍ତି ।

## ଅନୁଭୂତି ଓ ଅଭ୍ୟାସ

ପିଲାଦିନେ ସାଇକେଲ ଚଳାଇ ଦୂରସ୍ଥାନକୁ ଯିବା ଏବଂ ପ୍ରକୃତିକୁ ନିରୀକ୍ଷଣ କରିବା ଥିଲା ତାଙ୍କର ପ୍ରଧାନ ଅଭ୍ୟାସ । ବିଦ୍ୟାଳୟର ଛାତ୍ରଥିବା ସମୟରେ ପ୍ରାୟତଃ ବାର ବର୍ଷରୁ ସେ ଏକାକୀ ଏକାଧିକ ଥର କାଠଯୋଡ଼ି ଓ କୁଆଖାଇ ନଦୀ ପାରିହୋଇ ମୁଣ୍ଡୁ ମୁହାଣଠାରୁ ଡମପଡ଼ା ପର୍ଯ୍ୟନ୍ତ ନିବିଡ଼ ଚନ୍ଦକା ଅରଣ୍ୟର ଜୀବନ ସଙ୍କୁଳ ପ୍ରାୟ ତିରିଶି ମାଇଲ୍ ପଥ ଅତିକ୍ରମ କରନ୍ତି । ସେଠାରୁ କାଳିକାପ୍ରସାଦ ଘାଟ ପାଖରେ ମହାନଦୀ ପାର ହୋଇ ଅଂଶୁପା ହ୍ରଦ ତଟବର୍ତ୍ତୀ ସୁବର୍ଣ୍ଣପୁର ବିଦ୍ୟାଳୟରେ ଶିକ୍ଷକତା କରୁଥିବା ତାଙ୍କ ପିତାଙ୍କ ନିକଟକୁ ଯା'ନ୍ତି । ବାଘ, ଭାଲୁ, କୁମ୍ଭୀର ଆଦି ହିଂସ୍ରଜନ୍ତୁକୁ ସେ ଭୟ କରନ୍ତି ନାହିଁ । ବଣ ପ୍ରତି ଥାଏ ତାଙ୍କର ଅହେତୁକ ମୋହ । ପିଲାଦିନରୁ ମା' ମରିଯାଇଥିବାରୁ ଏବଂ ପିତା ଘରଠାରୁ ବହୁତ ଦୂରରେ ରହୁଥିବାରୁ ସେ ସ୍ୱାଧୀନ ଥା'ନ୍ତି । ଦିନସାରା ନଈକୂଳ, ତୋଟାମାଳ, ପୋଖରୀ ହୁଡ଼ା, ଶ୍ମଶାନ ଆଦି ନିର୍ଜନ ସ୍ଥାନରେ ଭ୍ରମଣ କରନ୍ତି । ଏମିତିକି ଦିନେ ଦିନେ ଗୋଟିଏ ଗୋଟିଏ ଆମ୍ବ

ଗଛରେ ବସି ଦିନ ବିତାନ୍ତି । ଆବାଲ୍ୟରୁ ତାଙ୍କଠାରେ ନିର୍ଭୟତା ଓ ଦୁଃସାହସିକତାର ପରିଚୟ ମିଳିଥିଲା ।

ରେଭେନ୍‌ସା କଲେଜିଏଟ୍‌ରେ ପଢୁଥିବା ସମୟରେ କଟକ ସହରର ଜନଜୀବନ ସମ୍ବନ୍ଧୀୟ ଜ୍ଞାନ ଆହରଣ କରିବାରେ ତାଙ୍କର ଥାଏ ପ୍ରବଳ ଆଗ୍ରହ । ସେ ଜଣେ ହିନ୍ଦୁ ବ୍ରାହ୍ମଣ ହୋଇ ମଧ ମସ୍‌ଜିଦ ଓ ଚର୍ଚ୍ଚ ପ୍ରତି ତାଙ୍କର ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ ପରିଲକ୍ଷିତ ହୁଏ । ଅନେକ ସମୟରେ ସେ ବିଭିନ୍ନ ଧର୍ମ ଉପାସନା ପୀଠକୁ ଯା'ନ୍ତି । କଟକର ରହଣିକାଳ ମଧ୍ୟରେ ବିଶେଷତଃ ମୁସଲମାନ ସଂପ୍ରଦାୟର ଜୀବନଚର୍ଯ୍ୟା ବିଷୟରେ ତାଙ୍କର ପ୍ରବଳ ଜିଜ୍ଞାସା ପ୍ରକାଶ ପାଇଥିଲା । ତାଙ୍କ କୃତିରେ ବର୍ଣ୍ଣିତ ମୁସଲମାନ ଚରିତ୍ର ଏହାର ନିଦର୍ଶନ । ଫଟୋଗ୍ରାଫି, ଗାର୍ଡେନିଂ ଓ ସଙ୍ଗୀତ ଚର୍ଚ୍ଚା ପ୍ରତି ତାଙ୍କର ରୁଚି ମଧ ପ୍ରବଳ ।

## ସାରସ୍ୱତ ପ୍ରତିଭାର ପରିଚୟ

ଶାନ୍ତନୁ ଆଚାର୍ଯ୍ୟଙ୍କ ସାହିତ୍ୟିକ ପ୍ରତିଭାର ପ୍ରଥମ ସ୍ଫୁରଣ ହୁଏ ସପ୍ତମ ଶ୍ରେଣୀରୁ । ବିଶ୍ୱଯୁଦ୍ଧ ସଂପର୍କୀୟ କବିତା ଲେଖି ସେ ଗ୍ରାମ ବିଦ୍ୟାଳୟରୁ 'ସ୍କୁଲ୍-ପୋଏଟ୍' ଉପାଧି ଲାଭ କରିଥିଲେ । ଏହି ସମୟରେ ଶାନ୍ତନୁ ଆଗ୍ରର୍ଯ୍ୟ ଅନେକ କବିତା ଲେଖିଥିଲେ । କବିତା ମାଧ୍ୟମରେ ଆଧୁନିକ ସମୟର ଘଟଣାବହୁଳ ଜଗତର ସକଳ ବିଭାଗ ଓ ମନୁଷ୍ୟର ମନସ୍ତତ୍ତ୍ୱକୁ ସୂକ୍ଷ୍ମ ଭାବେ ପ୍ରକାଶ କରିବା ଅସମ୍ଭବ ବୋଲି ଜାଣିପାରି ସେ ବାରବର୍ଷ ବୟସରୁ କବିତା ଲେଖାରୁ ସନ୍ନ୍ୟାସତ୍ୱ ବରି ନେଇଥିଲେ । ବହୁବର୍ଷ ପରେ ଅର୍ଥାତ ୧୯୫୯ ମସିହା ପରଠାରୁ ତାଙ୍କ ଲେଖକ ଜୀବନର ବିକାଶ ହେଲା । ଏହି ସମୟରୁ ସେ ଗଳ୍ପ, ଉପନ୍ୟାସ, ଶିଶୁସାହିତ୍ୟ, ବିଜ୍ଞାନ କାହାଣୀ ଆଦି ଲେଖିଆସୁଛନ୍ତି ।

### ଶିଶୁସାହିତ୍ୟ ଓ ବିଜ୍ଞାନ କାହାଣୀ :

ଶାନ୍ତନୁଙ୍କ ଶିଶୁ ସାହିତ୍ୟ ଓ ବିଜ୍ଞାନ କାହାଣୀଗୁଡ଼ିକ ହେଉଛି– ମୋ କାଠଘୋଡ଼ା କଥା କହେ (୧୯୬୧), ବାଗ୍-ବଗିଚାର ସୌଦାଗର (୧୯୬୨), ଆକାଶକୁ ସାତୋଟି ପାହାଚ (୧୯୬୩), କୋଣୀ ଉପତ୍ୟକାର ରାଜକୁମାର ମୋହନ

(୧୯୬୪), ଶକ୍ତିର କରାମତି (୧୯୭୧), ମୋ ନାଁ ତା ଭିନ୍‌ଚି ଓ ନିଅାଁଲଗା ଓପି (୧୯୮୦), ନିତିଦିନିଆ ଜୀବନରେ ବିଜ୍ଞାନ (୧୯୮୯), ସାହସିକ ବୈଜ୍ଞାନିକ ଆବିଷ୍କାର ଓ ଉଦ୍‌ଭାବନ (୧୯୮୯) ଇତ୍ୟାଦି ।

ବିଜ୍ଞାନ ସମ୍ବନ୍ଧୀୟ ବିଷୟକୁ ଶିଶୁ-ମନୋଜ୍ଞଧର୍ମୀ ସରଳ କାହାଣୀ ଆକାରରେ ବୈଜ୍ଞାନିକ ଗପଗୁଡ଼ିକରେ ବର୍ଣ୍ଣନା କରାଯାଇଥିବା ବେଳେ, ଜଙ୍ଗଲ ସଂପର୍କୀୟ କଥା କୋଶୀ ଉପତ୍ୟକାର ରାଜକୁମାର ମୋହନ କାହାଣୀରେ ପ୍ରକାଶ ପାଇଛି । ସେ ଅନେକ ଶିଶୁ ସାହିତ୍ୟର ରଚୟିତା । ପ୍ରାଥମିକ ପର୍ଯ୍ୟାୟରେ ଉଚ୍ଚକୋଟୀର ଶିଶୁସାହିତ୍ୟ ଓ ବୈଜ୍ଞାନିକ କାହାଣୀ ତାଙ୍କ ଲେଖନୀରୁ ନିଃସୃତ ହୋଇଥିଲେ ମଧ୍ଯ ଗତ କିଛିବର୍ଷ ଧରି ସେ ସେସବୁରୁ ଦୂରେଇ ରହିଛନ୍ତି । ତାଙ୍କର ନିଅାଁଲଗା ଓପି ବହିଟି ପରମାଣୁ ବୋମା ଆବିଷ୍କର୍ତ୍ତାଙ୍କ ବିଷୟରେ ରଚିତ । କିନ୍ତୁ ସେହି ବହି ବିଶେଷ ବିକ୍ରି ହେଲା ନାହିଁ । ତାଙ୍କର କେତେକ ବନ୍ଧୁ ମଧ୍ଯ ଆକ୍ଷେପ କରି କହିଥିଲେ ଯେ ତାଙ୍କ ଠାରେ ଶିଶୁ ସାହିତ୍ୟିକ ଛାପା ବସିଗଲାଣି, ସେ ଆଉ କିଛି ହୋଇପାରିବେ ନାହିଁ । ବୋଧହୁଏ ପ୍ରୋତ୍ସାହନର ଅଭାବ, ଗୁଣାତ୍ମକ ପ୍ରକାଶନରେ ସମସ୍ୟା ଓ ଶିଶୁ ସାହିତ୍ୟିକ ଛାପାର ଭୟ ତାଙ୍କୁ ଶିଶୁସାହିତ୍ୟ ରଚନାରୁ ଦୂରେଇ ନେଇଛି ।[୫]

**ଉପନ୍ୟାସ :**

ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚଳାଇଥିଲେ ମଧ୍ୟ ଉପନ୍ୟାସ ଦିଗଟି ଲେଖକଙ୍କୁ ସର୍ବାଧିକ ସନ୍ତୋଷ ଦେଇଛି । ପାରଳାଖେମୁଣ୍ଡିରେ ଅଧ୍ୟାପକ ଚାକିରି କରୁଥିବାବେଳେ ଅରଣ୍ୟ ମଧ୍ୟରେ ବସି ସେ ତାଙ୍କର ପ୍ରଥମ ଉପନ୍ୟାସ ନରକିନ୍ନର ଲେଖାର ଶୁଭାରମ୍ଭ କରିଛନ୍ତି । ସେହି ଦିନଠାରୁ ଆଜିପର୍ଯ୍ୟନ୍ତ ସେ ଉପନ୍ୟାସ ଲେଖା ଜାରି ରଖିଛନ୍ତି । ଶାନ୍ତନୁ ଆଚାର୍ଯ୍ୟଙ୍କ କେତେକ ଉପନ୍ୟାସର ସଂକ୍ଷିପ୍ତ ଆଲୋଚନାରୁ ତାଙ୍କ ସ୍ରଷ୍ଟା ପ୍ରତିଭାକୁ ଆକଳନ କରାଯାଇପାରେ ।

**ନରକିନ୍ନର (୧୯୬୨)** – ନରକିନ୍ନର ଏକ ଅଭିନବ ରଚନାଶୈଳୀର ଉପନ୍ୟାସ ଭାବେ ଓଡ଼ିଆ ଉପନ୍ୟାସ ଦରବାରରେ ସ୍ୱତନ୍ତ୍ର ସ୍ଥାନ ଦଖଲ କରିଛି । ଅଧିକାଂଶ ଉପନ୍ୟାସପ୍ରେମୀଙ୍କ ନିକଟରେ ଏହା ରହସ୍ୟମୟ ଓ ଦୁର୍ବୋଧ । ଉକ୍ତ ଉପନ୍ୟାସର ନାୟକ ଜର୍ଜ ଓଡ଼ିଆ ସାହିତ୍ୟରେ ସଂପୂର୍ଣ୍ଣ ରୂପେ ଏକ ନୂତନ ଚରିତ୍ର ।

୧୯୬୨ ମସିହା ପୂର୍ବରୁ ଏଭଳି ଚରିତ୍ର ପରିକଳ୍ପନା ଆଦୌ ସମ୍ଭବ ହୋଇନାହିଁ।[୬] ପରିତ୍ୟକ୍ତ ଅଜ୍ଞାତକୁଳଶୀଳ ଜର୍ଜ ହେଉଛି ଉପନ୍ୟାସର ମୁଖ୍ୟ ଚରିତ୍ର। ସେ ତା' ଜୀବନଯାତ୍ରାର ଅସହାୟତା ଓ ଲାଞ୍ଛନା ମଧ୍ୟରେ ବଞ୍ଚିବାର ଆଶା ରଖିଛି ଏବଂ ଜୀବନର ସକଳ କ୍ଷେତ୍ରରୁ ଅନୁଭୂତି ଆହରଣ ପାଇଁ ଜିଜ୍ଞାସା ପ୍ରକାଶ କରିଛି। ବିଭିନ୍ନ ପ୍ରକାର ଚରିତ୍ରର ସଂସ୍ପର୍ଶରେ ଜର୍ଜ ଆସିଛି ଏବଂ ଜୀବନର ମୂଲ୍ୟବୋଧ ଖୋଜିଛି। ପରିଣତିରେ ଜର୍ଜର ଚେତନାରେ ଉତ୍ତରଣ ଆସିଛି। ନିର୍ବିକାର ଭାବରେ ସେ ଅନ୍ଧୁଣୀ କୁଷ୍ଠ ରୋଗିଣୀର ପିଲାକୁ ନିଜ କୋଳକୁ ଟେକିନେଇଛି, ଯେମିତି ତାକୁ ଦିନେ ପାଦ୍ରି ବୁଢ଼ା ମେଡିକାଲ ନର୍ଦ୍ଦମାରୁ ଉଠେଇ ନେଇଥିଲା। ଏତିକିରେ ଜର୍ଜର କର୍ତ୍ତବ୍ୟରେ ପୂର୍ଣ୍ଣଚ୍ଛେଦ ପଡ଼ିନାହିଁ। ଔପନ୍ୟାସିକ ଗୋଟିଏ ପାତିମାଙ୍କଡ଼ ଚରିତ୍ର ମାଧ୍ୟମରେ କହିବାକୁ ଚାହାଁନ୍ତି ଯେ ବାନର ବିବର୍ତ୍ତିତ ହୋଇ ଆଜି ମାନବରେ ପହଞ୍ଚିଛି। ପୁଣି ଦିନେ ସେ ଅତିମମାନବରେ (Super man) ମଧ୍ୟ ପରିଣତ ହେବ। ମାତ୍ର ଏଥିପାଇଁ ଦରକାର ଗଭୀର ଆତ୍ମଜିଜ୍ଞାସା ଓ ଆଧ୍ୟାତ୍ମିକ ଅଭୀପ୍‌ସା। ମାନବର ଶାଶ୍ୱତ ଆତ୍ମାର ପରିପ୍ରକାଶ ହେଉଛି ନରକିନ୍ନର ଉପନ୍ୟାସର ପ୍ରଧାନ ଆଭିମୁଖ୍ୟ।

**ଶତାବ୍ଦୀର ନଚିକେତା (୧୯୬୫)** – କଥା ଉପନିଷଦର ନଚିକେତା ତାଙ୍କ ଧର୍ମାନ୍ଧ ପିତା ଉଦ୍ଦାଳକଙ୍କ କାର୍ଯ୍ୟରେ କ୍ଷୋଭ ପ୍ରକାଶ କରିଛି। ପିତାଙ୍କ ଇଚ୍ଛାନୁଯାୟୀ ଏବଂ ବିନା ପ୍ରତିବାଦରେ ଯମାଳୟକୁ ଯାଇଛି। ବିଷୟ ବାସନା ବର୍ଜିତ ନଚିକେତାର ଆତ୍ମସାକ୍ଷାତ୍‌କାର କାମନା ଯମଙ୍କ ଦ୍ୱାରା ପ୍ରଶଂସିତ ହୋଇଛି। ଶେଷରେ ଶୁଦ୍ଧକ୍ରିୟା ଓ ସଂଯତ ପ୍ରତିକ୍ରିୟାଶୀଳ ନଚିକେତା ହିଁ କେବଳ ମୃତ୍ୟୁକୁ ଜୟ କରିପାରିଛି। ଔପନ୍ୟାସିକ ଉପନିଷଦ ଯୁଗୀୟ ନଚିକେତାର ମାନଦଣ୍ଡରେ ଚଳନ୍ତି ଶତାବ୍ଦୀର ନଚିକେତାମାନଙ୍କର ମୂଲ୍ୟାୟନ କରିଛନ୍ତି। ଏ ଶତାବ୍ଦୀର ନଚିକେତା ବିଭୁପ୍ରସାଦ ଓ ନଟବର ଯଥାକ୍ରମେ କ୍ରିୟା ଓ ପ୍ରତିକ୍ରିୟାର ମୂର୍ତ୍ତିମନ୍ତ ପ୍ରତୀକ। ସମାଜରୁ ଦୁଃଖଦୁର୍ଦ୍ଦଶାକୁ ଦୂର କରିବା ନିମନ୍ତେ ସେମାନେ ସଂଘର୍ଷରତ। ସଂଘର୍ଷର ଲକ୍ଷ୍ୟ ଏକ ହେଲେ ମଧ୍ୟ ପଥ ଭିନ୍ନ। ବିଭୁପ୍ରସାଦ ଗବେଷଣା ଜ୍ଞାନର ଅନୁସନ୍ଧାନରେ ଗୁରୁତ୍ୱ ଦେଉଥିବାବେଳେ ନଟବର, ମନମୋହନଙ୍କ ଭଳି ବୁର୍ଜୁଆମାନଙ୍କ ଦୁର୍ନୀତିକୁ ମୂଳୋତ୍ପାଟନ କରିବା ପାଇଁ ସଂକଳ୍ପବଦ୍ଧ। ବିଭୁପ୍ରସାଦ ଗାନ୍ଧିବାଦୀ ହେଲେ ନଟବର

ମାର୍କସବାଦୀ । ସେମାନଙ୍କ ସଂଘର୍ଷର ପରିଣତି ପରବର୍ତ୍ତୀ 'ତିନୋଟି ରାତିର ସକାଳ' ଉପନ୍ୟାସରେ ଦେଖାଇ ଦିଆଯାଇଛି ।

ତିନୋଟି ରାତିର ସକାଳ (୧୯୬୯) – ଉକ୍ତ ଉପନ୍ୟାସରେ ବିଭୁପ୍ରସାଦ ଓ ନଟବର ନିଜସ୍ୱ ଆଦର୍ଶରୁ ଲକ୍ଷ୍ୟଚ୍ୟୁତ ହୋଇଛନ୍ତି । ସେମାନଙ୍କ କଳ୍ପିତ ରାମରାଜ୍ୟ କେବଳ ସ୍ୱପ୍ନରେ ରହିଯାଇଛି । ନଟବର ଓ ବିଭୁପ୍ରସାଦ ନଚିକେତାର ଦ୍ୱାହି ଦେଇ ବସ୍ତୁବାଦିତାର ଶିକାର ହୋଇଛନ୍ତି । ସେମାନେ ଯଥାର୍ଥରେ ବ୍ରହ୍ମବିତ୍ ନଚିକତା ହୋଇ ନ ପାରନ୍ତି । କେବଳ ଜିଜ୍ଞାସୁ ମାତ୍ର । ରକ୍ଷଣଶୀଳତା, ସହନଶୀଳତା ଓ ଈଶ୍ୱର ବିଶ୍ୱାସର ପ୍ରବଳ ଅବହାଓ୍ୱା ଭାରତରେ ପ୍ରବାହିତ ହେଉଥିବାରୁ ସାମ୍ୟବାଦର ବିକାଶ ଏଠାରେ ସମ୍ଭବପର ନୁହେଁ । ଉପନ୍ୟାସରେ ଫମ୍ପା ଗାନ୍ଧିବାଦ ଓ ମାର୍କସ୍‌ବାଦର ବିନାଶ ହୋଇଥିବାବେଳେ ବିଭୁପ୍ରସାଦର ପିତା ସଚ୍ଚା ଗାନ୍ଧିବାଦୀ ଭବାନୀ ପ୍ରସାଦ ହିଁ ତାଙ୍କର ଆଦର୍ଶକୁ ଶେଷପର୍ଯ୍ୟନ୍ତ ଉଜ୍ଜୀବିତ କରି ରଖିପାରିଛନ୍ତି ।

ଦକ୍ଷିଣାବର୍ତ୍ତ (୧୯୭୩) – ଦକ୍ଷିଣାବର୍ତ୍ତର ରୈକ୍ୟ ଏକ ଉପନିଷଦୀୟ ଚରିତ୍ର । ସେ ଥିଲେ ଜଣେ କର୍ମଯୋଗୀ । ରାଜା ଦାନଶ୍ରୁତିଙ୍କୁ ଜୀବନ ସମ୍ବନ୍ଧୀୟ ତତ୍ତ୍ୱ ଜଣାଇବା ସହିତ ନିଜ କର୍ମଦେବତାର ବାହକ ଶଗଡ଼ଟିକୁ ପ୍ରଦାନ କରି ଦକ୍ଷିଣାବର୍ତ୍ତର ଯାତ୍ରୀ ହୋଇଥିଲେ । ଉକ୍ତ ଉପନ୍ୟାସର ନାୟକ ରୈକ୍ୟ ଉପନିଷଦୀୟ ଚରିତ୍ର ଅନୁକରଣରେ ଅନୁପ୍ରାଣିତ । ନାୟକ ରୈକ୍ୟ ପରବର୍ତ୍ତୀ ସମୟରେ ବାବାଜି ନାମରେ ହୁଏ ନାମିତ । ଏହି ବାବାଜି ସାଧାରଣ ମାନବକୁ ଦୁଃଖରୁ ସୁଖ, ବିଷରୁ ଅମୃତ, ଜରାରୁ ଯୌବନ, ବିଳାସରୁ ବୈରାଗ୍ୟର ସନ୍ଧାନ ଦିଅନ୍ତି । ଏଥିପାଇଁ ଭାରତର ଉତ୍ତର ଦିଗର ତପୋଭୂମି ତୁଷାରାଚ୍ଛନ୍ନ ହିମାଳୟକୁ ଯିବାକୁ ପଡ଼ିବ ନାହିଁ, ଏହାର ପଥ ଦକ୍ଷିଣ । ଯେଉଁ ପଥର ଯାତ୍ରୀ ହୋଇଥିଲେ ଶଙ୍କରାଚାର୍ଯ୍ୟ, ଅରବିନ୍ଦ, ବିବେକାନନ୍ଦ ପ୍ରମୁଖ ମନୀଷୀଗଣ । ବାବାଜି ସାଧାରଣ ମାନବକୁ ଅତିମାନବ ହେବା ନିମନ୍ତେ ଗଭୀର ଆଧାତ୍ମିକ ଅଭୀପ୍‌ସା, ସତ୍‌କର୍ମ, ଆତ୍ମଜ୍ଞାନର ନିଗୂଢ଼ ତତ୍ତ୍ୱ ପ୍ରଦାନ କରିଛନ୍ତି । ଦୁଃଖ, ଶୋକଭରା ଜଞ୍ଜାଳଗ୍ରସ୍ତ ସମାଜ ହିଁ ହେଉଛି ଅତି ମାନବର ଉପାସନା ପୀଠ ।

**ଯାତ୍ରାର ପ୍ରଥମ ପାଦ (୧୯୭୬)** – ଉକ୍ତ ଉପନ୍ୟାସରେ ସ୍ୱାଧୀନ ଭାରତର ନାରୀ ନିର୍ଯାତନାର ଅନ୍ତରାଳରେ ଥିବା ରାଜନୈତିକ ବ୍ୟକ୍ତିଙ୍କ ପ୍ରଚ୍ଛନ୍ନ ହାତର ରହସ୍ୟ ଉନ୍ମୋଚନ କରାଯାଇଛି । ପହିଲି ସ୍ୱାଧୀନତା ଦିବସର ଭାଷଣ ଶୁଣିବା ପାଇଁ ବାଳିକା ମିନି ପ୍ରଚାର ଘୋଡ଼ାଗାଡ଼ିର ପଛରେ ଦୌଡ଼ି ଦୌଡ଼ି ସ୍ୱଗୃହଠାରୁ ବହୁଦୂରକୁ ଚାଲିଯାଇଛି । ପୁଲିସବାଲାଙ୍କୁ ଖାତିର୍ ନ କରି ସଭାମଞ୍ଚରେ ପାଣି ବାଣ୍ଟିଛି । ନେତାମାନଙ୍କ ଭାଷଣ ଶୁଣି ସରଳା ମିନି ଗାନ୍ଧି ମହାତ୍ମାଙ୍କ କଳ୍ପିତ ରାମରାଜ୍ୟର ସ୍ୱପ୍ନରେ ବିହ୍ୱଳିତ ହୋଇଉଠିଛି । କିନ୍ତୁ ତାହା ଥିଲା ତା'ର ଦିବାସ୍ୱପ୍ନ । ସମୁଦ୍ରବେଳାର ଜନସମୁଦ୍ର ମଧ୍ୟରୁ ଛଦ୍ମବେଶୀ ରାବଣମାନଙ୍କ ଦ୍ୱାରା ହରିତା କିଶୋରୀ ମିନି ଶେଷରେ ନିଜ ପିତାମାତାଙ୍କ ସମ୍ମୁଖରେ ଧର୍ଷଣର ଶିକାର ହୋଇଛି । ପୁନଶ୍ଚ ଧର୍ଷିତା ମିନିର ବିବାହ ଭାଙ୍ଗିବା ପାଇଁ ସେମାନେ ଚକ୍ରାନ୍ତ କରିଛନ୍ତି । ଉପନ୍ୟାସର ପରିଣତିରେ ସେଇ ଗାନ୍ଧି, ରାମମୁଖା ପରିହିତ ନକ୍ସଲମାନେ ଜନତା ବିପ୍ଳବ ନାମରେ ନିଜର ସ୍ୱାର୍ଥ ସିଦ୍ଧି ପାଇଁ ମିନିକୁ ତା'ର ପିତା ଗୃହରୁ ଧରି ନେଇଛନ୍ତି । ବିନା ପ୍ରତିରୋଧରେ ସେ ମଧ୍ୟ ଚାଲିଯାଇଛି ସେମାନଙ୍କ ଘୋଡ଼ାଗାଡ଼ିରେ ସୀତାଦେବୀଙ୍କ ପରି ନିଜ ହସ୍ତର କାଚ ଫିଙ୍ଗି ଫିଙ୍ଗି । ରାମ, କୃଷ୍ଣ, ଗାନ୍ଧି ଓ ଅରବିନ୍ଦଙ୍କ ନାମ ଜପି ଜପି ସେ ଅପେକ୍ଷା କରିଛି ପୃଥିବୀର କୁତ୍ସିତ ରାଜନୈତିକ ବ୍ୟବସ୍ଥା ଓ ବ୍ୟକ୍ତିଙ୍କ ଅବସାନକୁ ।

**ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ (୧୯୭୭)** – ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଭାରତର ରାଜନୈତିକ, ସାମାଜିକ ଘଟଣାକୁ ନେଇ ଏହି ଉପନ୍ୟାସର କଥାବସ୍ତୁ ପରିକଳ୍ପିତ । ଏହାର ରଙ୍ଗଭୂମି ହୋଇଛି ନିପଟ ମଫସଲ ଅଭୟପୁର ଗ୍ରାମ । ନାୟକ ଲକ୍ଷ୍ମଣ ମିଶ୍ର ତାଙ୍କ ବନ୍ଧୁଙ୍କର ବାଳୁତ ବିଧବା କନ୍ୟାର ପୁନଃ ବିବାହ ଭୋଜିରେ ଯୋଗଦେଇ ଗ୍ରାମରୁ ବାସନ୍ଦ ହୋଇଛନ୍ତି । ଘଟଣାକ୍ରମେ ଲକ୍ଷ୍ମଣ ମିଶ୍ର ଗାଁ ଛାଡ଼ି ମହାତ୍ମା ଗାନ୍ଧିଙ୍କ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଜେଲ୍ ଭୋଗିଛନ୍ତି । ଜେଲ୍‌ରୁ ମୁକୁଳି ନିଜ ଗ୍ରାମରେ ଗାନ୍ଧିଙ୍କ ଅହିଂସା ନୀତି ପ୍ରଚାର କରିଛନ୍ତି । ଗ୍ରାମବାସୀ ତାଙ୍କ ନେତୃତ୍ୱକୁ ସ୍ୱୀକାର କରି ମଧ୍ୟ ହିଂସା ପ୍ରଣୋଦିତ ହୋଇଛନ୍ତି । ଯାହାଫଳରେ ଇଂରେଜ ସରକାରର ଗୋଲାମ ତଥା ଗ୍ରାମର ଅତ୍ୟାଚାରୀ ଜମିଦାରକୁ ସେମାନେ ନିପାତ କରିଛନ୍ତି । ମାତ୍ର ଦେଶ ସ୍ୱାଧୀନ ହେବାପରେ

ଗ୍ରାମବାସୀମାନେ ଅସଲି ଗାନ୍ଧିବାଦୀ ଲକ୍ଷ୍ମଣ ମିଶ୍ରଙ୍କ ଦଳକୁ ଉପେକ୍ଷା କରି ନକଲି ଗାନ୍ଧିଭକ୍ତ ପୂର୍ବୋକ୍ତ ମୃତ ଜମିଦାରର ପୁତ୍ରକୁ ଏମ୍.ଏଲ୍.ଏ ରୂପେ ନିର୍ବାଚିତ କରାଇଛନ୍ତି । ସ୍ୱାଧୀନୋତ୍ତର ଭାରତକୁ ଗ୍ରାସ କରିଛି କମ୍ୟୁନିଜିମ୍‌ର ମୋହ । ଲକ୍ଷ୍ମଣ ମିଶ୍ରଙ୍କ ପୁତ୍ର କମ୍ୟୁନିଜିମ୍ ଦ୍ୱାରା ପ୍ରଭାବିତ ହୋଇ କାରାଦଣ୍ଡ ପାଇଛି । ଲକ୍ଷ୍ମଣ ମିଶ୍ର ପୁତ୍ରକୁ ଦେଖିବା ନିମନ୍ତେ ଜେଲକୁ ଧାଇଁ ଯାଇଛନ୍ତି । ଯେଉଁଠି ସେ କାରାବାସ କରିଥିଲେ ଅତୀତରେ । କିନ୍ତୁ ସେତେବେଳେ ଗାନ୍ଧି ଥିଲେ ଜୀବିତ । ସେ ଥିଲା ଅନ୍ୟ ଏକ ସମୟ ଓ ଅନ୍ୟ ଏକ ଭାରତ ।

ମହାତ୍ମା ଗାନ୍ଧିଙ୍କ ସ୍ୱାଧୀନତା ପୂର୍ବବର୍ତ୍ତୀ ସୁସ୍ୱପ୍ନ ସ୍ୱାଧୀନତା ପରବର୍ତ୍ତୀକାଳରେ ଯେଉଁ ଭଳି ଦୁଃସ୍ୱପ୍ନରେ ରୂପାନ୍ତରିତ ହୋଇଛି ତାହା ଉପନ୍ୟାସର ମର୍ମବାଣୀ । ଏଥିରେ ଗାନ୍ଧିବାଦ ଓ କମ୍ୟୁନିଜିମ୍‌ର ବିଫଳତା ପ୍ରକାଶ ପାଇଥିଲେ ମଧ୍ୟ ଭବିଷ୍ୟତରେ ମାନବିକତାର ଜୟ ହେବ ବୋଲି ଔପନ୍ୟାସିକ ଆଶାବାଦୀ ।

**ଶକୁନ୍ତଳା (୧୯୮୦)** – ଭାରତର ଷଷ୍ଠ ଓ ସପ୍ତମ ଦଶକର ରାଜନୈତିକ ସମସ୍ୟାକୁ ଭିତ୍ତିକରି ଏହା ରଚିତ । ଏହି ସମୟରେ କମ୍ୟୁନିଜିମର ପ୍ରସାର ଓ ତା'ର ଅଧଃପତନ, ପୁଞ୍ଜିପତିମାନଙ୍କ ଅତ୍ୟାଚାରର ବର୍ଣ୍ଣନା ହୋଇଛି ଏଥିରେ । ନାୟକ ବାୟା ସାଜିଛି କମ୍ୟୁନିଷ୍ଟ ନେତା । ସେ ମାର୍କସ, ଲେନିନ୍, ମାଓଙ୍କ ନୀତିକୁ ସଂପୂର୍ଣ୍ଣ ରୂପେ ଗ୍ରହଣ କରିପାରିନାହିଁ । ଭାରତୀୟ ସଂସ୍କୃତି ପ୍ରତି ଉଦାର ମନୋଭାବ ସେ ପୋଷଣ କରିଛି । ତା'ର ସହକର୍ମୀ ଯତୀନ୍, ପ୍ରଫୁଲ୍ଲ, ସାଧନ, ସୁବୀର୍, କଞ୍ଚନା ଆଦି ହୋଇଛନ୍ତି ଉଗ୍ର କମ୍ୟୁନିଷ୍ଟପ୍ରେମୀ । ନାୟିକା ଅସୀମା ଉପାଧ୍ୟାୟ ଓରଫ୍ ଶକୁନ୍ତଳା ଗାନ୍ଧି ଆଦର୍ଶରେ ଅନୁପ୍ରାଣିତ । ସେ ବାସ୍ତବବାଦୀ ଓ ମାଧୁର୍ଯ୍ୟବାଦୀ ଦାମା ଗଉଡ଼, ନାରଣା ବଢ଼େଇ ପ୍ରମୁଖ ବୈଷ୍ଣବମାନଙ୍କର ନେତ୍ରୀ । ବୈଷ୍ଣବ ଓ କମ୍ୟୁନିଷ୍ଟମାନଙ୍କର ପରୀକ୍ଷା କ୍ଷେତ୍ର ହୋଇଛି କଣ୍ଡୁଆ ଗ୍ରାମ । ଉଭୟ ଦଳର ଲକ୍ଷ୍ୟ ଏକ ହେଲେ ମଧ୍ୟ ପଥ ଭିନ୍ନ । ଯକ୍ଷ, ଜମିଦାର, ମହାଜନ ଆଦି ପୁଞ୍ଜିପତି ଓ ବୂର୍ଜୁଆମାନଙ୍କର ଅବସାନ ଘଟାଇବା ହେଉଛି ଉଭୟ ଦଳର ମତଲବ । କମ୍ୟୁନିଷ୍ଟମାନେ ହିଂସାତ୍ମକ ବିପ୍ଳବର ସପକ୍ଷରେ ଥିବାବେଳେ ବୈଷ୍ଣବମାନେ ଅହିଂସାତ୍ମକ ଆନ୍ଦୋଳନର ସମର୍ଥକ ଅଟନ୍ତି । ଉଭୟ ଦଳ ଆନ୍ଦୋଳନରେ ବିଫଳ

ହୋଇଥିଲେ ହେଁ ଜଗନ୍ନାଥ ଧର୍ମ, ସଂସ୍କୃତି କେବଳ ବୁର୍ଜୁଆମାନଙ୍କୁ ଜିତିପାରିଛି । କାରଣ ଜଗନ୍ନାଥ ସଂସ୍କୃତିରେ ହିଂସା ଓ ଅହିଂସାର ମଧୁର ସମନ୍ୱୟ ଘଟିଛି । ଭାରତର ସଂକଟ ସମୟରେ କୌଣସି ବ୍ୟକ୍ତିବିଶେଷଙ୍କ ମତବାଦ ଅପେକ୍ଷା ଜାତୀୟ ଦେବତାଙ୍କର ଆଦର୍ଶ ବା ବାଦ ଗ୍ରହଣଯୋଗ୍ୟ ହୋଇଛି ।

ମନ୍ତ୍ରୀଙ୍କ ସେୟାର (୧୯୮୮) – ଉକ୍ତ ଉପନ୍ୟାସରେ ସଭ୍ୟ ଶିକ୍ଷିତ ବୋଲାଉଥିବା ଆଧୁନିକ ବ୍ୟକ୍ତିବିଶେଷଙ୍କର ନାରୀ ଜାତି ପ୍ରତି ଥିବା ହୀନମନ୍ୟତା, କାମୁକତାର ପରିପ୍ରକାଶ ହୋଇଛି । ନାୟିକା ସୁପ୍ରୀତି ଦେବୀ ବିବାହ ପରେ ଶାଶୂଘରେ ନିର୍ଯାତିତ ହୋଇ ସହରକୁ ଆସିଛନ୍ତି । ସହରରେ ଇଞ୍ଜିନିୟର ସ୍ୱାମୀଙ୍କ ସମ୍ଭ୍ରାନ୍ତ ବନ୍ଧୁମାନଙ୍କଠାରୁ ସେ କବୀ ଭାବରେ ମଧ କମ୍ ଅଶ୍ଳୀଳ ଇଙ୍ଗିତର ଶରବ୍ୟ ହୋଇନାହାନ୍ତି । ଚାଳିଶି ବର୍ଷ ବୟସରେ ତାଙ୍କ ଜୀବନ ଏକ ନାଟକୀୟ ମୋଡ଼ ନେଇଛି । ଦିନେ ରାତ୍ରିରେ ଯାତ୍ରାଦଳର ଶ୍ରୀକୃଷ୍ଣଙ୍କ ସହିତ ତାଙ୍କର ଭେଟ ହୋଇଛି । ସେହି ଦିନଠାରୁ ତାଙ୍କର ଗୋପୀଭାବ ଜାଗ୍ରତ ହୋଇଛି ଏବଂ ସ୍ୱାମୀଙ୍କର ହୋଇଛନ୍ତି ଆଦରଣୀୟା । ସୁପ୍ରୀତି ଦେବୀଙ୍କର ଜାମାତା କନ୍ୟା ସନ୍ତାନ ପାଇଁ ଇଚ୍ଛୁକ ନୁହଁନ୍ତି । ସେ ତାଙ୍କ ସ୍ତ୍ରୀର ଗର୍ଭପାତ କରାଇବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଗାଡ଼ିଟିଏ ଯୌତୁକ ପାଇଲେ ଜ୍ୱାଇଁ ତା'ର ନିଷ୍ପତ୍ତିରୁ ନିବୃତ୍ତ ହେବ ବୋଲି ସମୁଦୀ, ସମୁଦିଆଣୀ ମତ ଦେଇଛନ୍ତି । ଶେଷରେ ସୁପ୍ରୀତି ଦେବୀଙ୍କ ସଚ୍ଚୋଟ ସ୍ୱାମୀ କଣ୍ଟ୍ରାକ୍ଟରଠାରୁ ଦୁଇ ଲକ୍ଷ ଟଙ୍କା କିଳାପୋତା ଆଣି ଯୌତୁକ ଗାଡ଼ି ବାବଦକୁ ଦେଇ କନ୍ୟା ଭ୍ରୂଣଟିର ଜୀବନ ରକ୍ଷା କରିଛନ୍ତି । ସ୍ୱାର୍ଥାନ୍ଧ ଓ କାମାନ୍ଧ ଆଇ.ଏ.ଏସ୍ ସମୁଦୀ ସୁପ୍ରୀତି ଦେବୀଙ୍କ ସ୍ୱାମୀର କଳାଧନର ସେୟାର ସ୍ୱରୂପ ତାଙ୍କୁ ବଳାତ୍କାର କରିଛନ୍ତି । ପୁନଶ୍ଚ ମନ୍ତ୍ରୀଙ୍କ ସେୟାର ବାବଦ ତାଙ୍କ ସ୍ୱାମୀଙ୍କୁ ଦ୍ୱିତୀୟବାର ଦୁର୍ନୀତିଗ୍ରସ୍ତ ହେବାକୁ ପଡ଼ିଛି ଏବଂ ଶେଷରେ ନ' ମହଲାରୁ ପଡ଼ି ସେ ପ୍ରାଣତ୍ୟାଗ କରିଛନ୍ତି । ସୁପ୍ରୀତି ଦେବୀ ବୈଧବ ଯନ୍ତ୍ରଣା ଭୋଗିଛନ୍ତି । ଉକ୍ତ ଉପନ୍ୟାସରେ ନାରୀ ନିର୍ଯାତନା ମାଧ୍ୟମରେ ନାରୀ ସ୍ୱାଧୀନତାର କଥାକୁ ସୂଚେଇ ଦିଆଯାଇଛି ।

ଶାନ୍ତନୁ ଆଚାର୍ଯ୍ୟଙ୍କ ଉପନ୍ୟାସରାଜିରେ ପ୍ରତୀକ, ମିଥ୍, ଚିତ୍ରକଳ୍ପ, ମେଟାଫିଜିକ୍ସ, ଅସ୍ତିତ୍ୱବାଦ, ସୂକ୍ଷ୍ମ ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ଆଧ୍ୟାତ୍ମିକ ଜିଜ୍ଞାସା, ରାଜନୈତିକ ଓ ସାମାଜିକ ଅବକ୍ଷୟତା, ନାଟକୀୟ ଉପସ୍ଥାପନା, ଜିଜ୍ଞାସାମୟ

ପରିଣତି, ବିଷୟବସ୍ତୁ ଓ ଚରିତ୍ର ନିର୍ବାଚନରେ ନୂତନତା, ନିପଟ ଗ୍ରାମୀଣ ଓ ପଣ୍ଡିତ ଭାଷାର ପ୍ରୟୋଗ ପରିଲକ୍ଷିତ ହୁଏ । ଉପନ୍ୟାସ ରଚନାରେ ସେ ଯେଉଁ ମୌଳିକତ୍ୱ ପ୍ରଦର୍ଶନ କରିଛନ୍ତି ତାହା ତାଙ୍କୁ ଯଶସ୍ୱୀ ଔପନ୍ୟାସିକ ହେବାର ଗୌରବ ପ୍ରଦାନ କରିଛି । ଯଶଃଶାଳୀ ଔପନ୍ୟାସିକ ହେବାର ଅନ୍ତରାଳରେ ରହିଛି ତାଙ୍କ ଗାଳ୍ପିକ ଜୀବନର ପ୍ରୋତ୍ସାହନ । କାରଣ ପ୍ରଥମେ ସେ ଗଳ୍ପ ରଚନାରେ ହାତ ଦେଇ ବେଶ୍ ସିଦ୍ଧି ଲାଭ କରିଥିଲେ ।

**ଗଳ୍ପ :**

ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପର ଜନ୍ମ ହୁଏ ଏକ ମାହେନ୍ଦ୍ର ବେଳାରେ । ତାହା ହେଉଛି ୧୯୫୮ ମସିହାରେ । ସେତେବେଳେ ସେ ପାରଳାଖେମୁଣ୍ଡିସ୍ଥିତ ଶ୍ରୀକୃଷ୍ଣଚନ୍ଦ୍ର ଗଜପତି କଲେଜର ବିଜ୍ଞାନ ବିଭାଗର ଅଧ୍ୟାପକ ଥା'ନ୍ତି । ବିଜ୍ଞାନର ଗବେଷକ ହେବାପାଇଁ ସେ ମଧ୍ୟ ଆଶା କରିଥା'ନ୍ତି । କିନ୍ତୁ ବିଧିର ବିଧାନ ହୁଏ ଭିନ୍ନ ପ୍ରକାର । ଉତ୍କଳ ଭାରତୀର କର୍ଣ୍ଣଧାର ହେବାପାଇଁ ଯା'ର ଜନ୍ମ ସେ କେବେ ଜଡ଼ବାଦୀ ଗବେଷକ ହୋଇ ନ ପାରେ । ଏହି ସମୟରେ ତାଙ୍କର ସାକ୍ଷାତ୍ ହୁଏ ସେହି କଲେଜର ଅଧ୍ୟାପକ ତଥା ଗାଳ୍ପିକ ମହାପାତ୍ର ନୀଳମଣି ସାହୁଙ୍କ ସହ । ନୀଳମଣି ସାହୁଙ୍କ ପ୍ରେରଣାରେ ସେ ସର୍ଜନା କରନ୍ତି ତାଙ୍କର ପ୍ରଥମ ସଫଳ ଗଳ୍ପ 'ମନମର୍ମର' । ଏହାପରଠାରୁ ସେ କେବେ ପଛକୁ ଫେରିନାହାନ୍ତି । ଝଙ୍କାର, ସମାବେଶ, ଆସନ୍ତାକାଲି, ଧରିତ୍ରୀ ଆଦି ପ୍ରମୁଖ ପତ୍ରପତ୍ରିକାରେ ଗୋଟିଏ ପରେ ଗୋଟିଏ ଗଳ୍ପ ପ୍ରକାଶ କରି ଓଡ଼ିଆ ଗଳ୍ପ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ତାଙ୍କ ଗଳ୍ପ ସଂକଳନଗୁଡ଼ିକ ହେଉଛି– ମନମର୍ମର (୧୯୬୨), ଦୁର୍ବାର (୧୯୬୫), ଏଇ ଶେଷ ପଦଟି (୧୯୭୨), ଅରଣ୍ୟର ଚୂଳ (୧୯୭୪), ଅଦିନ ବଉଳ (୧୯୭୮), ଏକବିଂଶ ଶତାବ୍ଦୀ ପାଇଁ ଗଳ୍ପ (୧୯୮୧), କରଞ୍ଜିଆ ଡାଏରୀ (୧୯୮୪), ଆଦ୍ୟସକାଳ (୧୯୮୫), ସର୍ପଯାନ (୧୯୮୯), ଚଳନ୍ତି ଠାକୁର (୧୯୯୧) ଇତ୍ୟାଦି ।

## ପୁରସ୍କାର ଓ ସମ୍ମାନ

ଜଣେ ପ୍ରସିଦ୍ଧ ଲେଖକ ଭାବରେ ସେ କେବଳ ଓଡ଼ିଶାରେ ନୁହେଁ ସମଗ୍ର ଭାରତରେ ମଧ୍ୟ ସମ୍ମାନିତ । ୧୯୬୧ ମସିହାରେ 'ମୋ କାଠଘୋଡ଼ା କଥା କହେ'

ଶିଶୁ କାହାଣୀ ପାଇଁ ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରଣାଳୟର 'ଶିଶୁସାହିତ୍ୟ' ପୁରସ୍କାର,୧୯୬୧ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ 'ବିଷୁବ ପୁରସ୍କାର', ୧୯୬୩ରେ 'ଆକାଶକୁ ସାତୋଟି ପାହାଚ' ପୁସ୍ତକ ନିମନ୍ତେ ଭାରତ ସରକାରଙ୍କ ଶିକ୍ଷା ବିଭାଗର 'ନବମ ଶିଶୁସାହିତ୍ୟ' ପୁରସ୍କାର, ୧୯୭୯ ମସିହାରେ ପଦ୍ମଭୂଷଣ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଦ୍ୱାରା ପ୍ରତିଷ୍ଠିତ 'ଧରିତ୍ରୀ' ପୁରସ୍କାର, ୧୯୮୧ ମସିହାରେ ଗୋଦାବରୀଶ ସାହିତ୍ୟ ସଂସଦ ସମ୍ମାନ, ୧୯୮୭ ମସିହାରେ ଶକୁନ୍ତଳା ଉପନ୍ୟାସ ପାଇଁ 'ଶାରଳା ପୁରସ୍କାର', ୧୯୮୭ ମସିହାରେ ବିଷୁବ ଝଙ୍କାର ପୁରସ୍କାର, ୧୯୯୨ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରତିଷ୍ଠିତ 'ଭାରତ ନାୟକ ସମ୍ମାନ', ୧୯୯୨ରେ ମୈନାକ ସାହିତ୍ୟ ସଂସଦ ଦ୍ୱାରା ପ୍ରତିଷ୍ଠିତ 'ଉତ୍କଳମଣି ସମ୍ମାନ', ୧୯୯୩ ମସିହାରେ ଚଳନ୍ତି ଠାକୁର ଗଳ୍ପ ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଆଦି ଅନେକ ମାନସମ୍ମାନର ସେ ଅଧିକାରୀ ।

## ମୌଳିକ କୃତିର ଅନୁବାଦ

ଗାଳ୍ପିକ ଆଚାର୍ଯ୍ୟଙ୍କର କେତେକ କୃତି ହିନ୍ଦୀ, ଇଂରାଜି, ବଙ୍ଗଳା, ମାଲୟାଲାମ୍, ଗୁଜୁରାଟୀ ଭାଷାରେ ଅନୁବାଦିତ ହୋଇଛି । 'ଧର୍ମଯୁଗ' (ହିନ୍ଦୀ), 'ସାରିକା' (ହିନ୍ଦୀ), ଦେଶ୍(ବଙ୍ଗଳା), ମୟୂର(କନ୍ନଡ଼), ଇଣ୍ଡିଆନ୍ ଲିଟେରେଚର (ଇଂରାଜି), ନିଉ କ୍ୱେଷ୍ଟ (ଇଂରାଜି) ଆଦି ପ୍ରସିଦ୍ଧ ପତ୍ରପତ୍ରିକାରେ ତାଙ୍କର ଲେଖା ବିଭିନ୍ନ ଭାଷାରେ ଅନୂଦିତ ହୋଇ ପ୍ରକାଶ ପାଇଛି । 'ଦକ୍ଷିଣାବର୍ତ୍ତ' ଉପନ୍ୟାସ ଡକ୍ଟର ରେଣୁକା ଶ୍ରୀରାମଙ୍କ ଦ୍ୱାରା ଗୁଜୁରାଟୀ ଭାଷାରେ ଏବଂ ତାଙ୍କର ଗୋଟିଏ ଗଳ୍ପ ଋସିଆନ୍ ଭାଷାରେ ମସ୍କୋସ୍ଥିତ ଏମ୍/ଏସ୍ ରାଦୁଗା ପ୍ରକାଶନ ଦ୍ୱାରା ପ୍ରକାଶ ପାଇଛି ।

## ଗଳ୍ପ ପ୍ରତିଭାର ଆଦ୍ୟ ଅର୍ଘ୍ୟ : 'ମନମର୍ମର'

୧୯୫୯ ମସିହାରେ ଶାନ୍ତନୁବାବୁଙ୍କ ପ୍ରଥମ ଗଳ୍ପ 'ମନମର୍ମର' ଓଡ଼ିଶାର ଅଭିଜାତ ସାରସ୍ୱତ ପତ୍ରିକା ଝଙ୍କାରରେ ପ୍ରକାଶ ପାଇଛି । ତାଙ୍କ ଅଗ୍ରଜାର ମର୍ମନ୍ତୁଦ ମୃତ୍ୟୁ ହେଉଛି ଗଳ୍ପର ପୃଷ୍ଠଭୂମି । ସେ ତାଙ୍କର ଶିଶୁପୁତ୍ର ମୁନୁ ଓ କନ୍ୟା ରୁନୁର ଖେଳକୁ ଦେଖି ନିଜର ବିଗତ ଶୈଶବର ସ୍ମୃତି ରୋମନ୍ଥନ କରିଛନ୍ତି । ବାଲ୍ୟକାଳରେ

ସେ ନିଜର ଜ୍ୟେଷ୍ଠା ଭଗିନୀ ସହିତ ଗୁନୁ ଓ ମୁନୁଙ୍କ ପରି ଗାଈଖେଳ, ମକୁନ୍ଦା ଧାକ୍ ମକୁନ୍ଦା ଗୀତ, ପ୍ରଜାପତି ଧରିବା, କୋଳି ତୋଳିବା, ନଦୀକୂଳରେ ବାଲୁକି ପଲ୍ଲୀ ଗଢ଼ିବା ଭଳି ଶିଶୁଖେଳ ଖେଳୁଥିଲେ ଓ ଶିଶୁଗୀତ ଗାଉଥିଲେ । ତାଙ୍କ ଶିଶୁଖେଳ ଆଉ ଗୀତରେ ହଠାତ୍ ପଡ଼ିଗଲା ପୂର୍ଣ୍ଣଚ୍ଛେଦ । ଅର୍ଥାତ୍, ଏକଦା ତାଙ୍କର ନାନୀ ନଈ ଅତଡ଼ିରେ ଥିବା କୋଳିଗଛରୁ କୋଳି ତୋଳୁଥିବା ସମୟରେ ସେ ତାଙ୍କ ଅଣ୍ଟିକୁ ମୁଠାଏ କୋଳି ପାଇଁ ଝାମ୍ପ ମାରିଛନ୍ତି । କୋଳିର ସ୍ୱାଦ ଚାଖିବା ପୂର୍ବରୁ ଭଉଣୀ ଦନ୍ଥୁଡ଼ା ଅତଡ଼ିରେ ଗଡ଼ିଗଡ଼ି ସଂଜ୍ଞାହୀନ ହୋଇଛି ଏବଂ ପରିଣତିରେ ଚିରଦିନ ପାଇଁ ନଦୀର ବାଲୁକି ପଲ୍ଲୀରେ ସମାଧି ନେଇଛି । ନାନୀର ଭୂତ ଭୟରେ ଗଳ୍ପ ନାୟକଙ୍କୁ ନଦୀକୂଳ ଓ ନଦୀବନ୍ଧର ଝଙ୍କା ବରଗଛ ମୂଳକୁ ଯିବା ନିମନ୍ତେ ନିଷେଧ କରାଯାଇଛି । ନାନୀର ମୃତ୍ୟୁ ପାଇଁ ଗଳ୍ପନାୟକ ଆତ୍ମଧିକ୍କାର ପୂର୍ବକ କହନ୍ତି– "ମୁଁ, ମୁଇଁ ତ ଖାଇଲି ତାକୁ । ଗଛ କିଆଁ ଖାଇବ ? ଅସୁରୁଣୀ କିଆଁ ଛୁଇଁବ ?"[୨]

ନିଜ ଦୁଷ୍କର୍ମର ଦାରୁଣ ପରିଣତି ନିମନ୍ତେ ଭାଗ୍ୟ ଭଗବାନଙ୍କୁ ଦୋଷ ନ ଦେଇ ନିଜକୁ ଦାୟୀ କରିବା ବିଧେୟ । କିନ୍ତୁ ଗାଳ୍ପିକ ଗଳ୍ପର ପରିଣତିରେ ବିଧାତାଙ୍କୁ ଦୋଷାରୋପ କରିଛନ୍ତି । ପିଉସୀ ନାନୀର ଭୂତ ଭୟରେ ଗୁନୁ ଓ ମୁନୁ ଦୌଡ଼ିଆସନ୍ତି ତାଙ୍କ କୋଳକୁ । ଗାଳ୍ପିକ ତାଙ୍କ ବିଗତା ଭଉଣୀର ଅତୃପ୍ତ ଆତ୍ମାକୁ ନିଜର ବାଳୁତ ସୂତା ମଧ୍ୟରେ ଲୁକ୍କାୟିତ ଥିବାର ସନ୍ଦେହ କରି ଅଜ୍ଞାତ ଭବିଷ୍ୟତ ପାଇଁ ଭୟଭୀତ ହୋଇଉଠନ୍ତି । ଉକ୍ତ ଗଳ୍ପରେ ସମୟ ସଚେତନତାର ପ୍ରଭାବ ସ୍ପଷ୍ଟ ରୂପେ ପରିଲକ୍ଷିତ ହୁଏ । କାରଣ ଅତୀତର ସ୍ମୃତି ପିଉସୀ ନାନୀର ଭୂତ ଭୟରେ ବର୍ତ୍ତମାନର ପ୍ରତିଭୂ ଗାଳ୍ପିକଙ୍କ କୋଳରେ ତାଙ୍କ ଭବିଷ୍ୟତର ଉତ୍ତରାଧିକାରୀ ପୁତ୍ର, କନ୍ୟା ଲୋଟିପଡ଼ିଛନ୍ତି ।

ବାତ୍ସଲ୍ୟ ଓ କାରୁଣ୍ୟ, ଆତ୍ମଜିଜ୍ଞାସ ଓ ଅସହାୟତା, ଭୌତିକ ଓ ଆଧ୍ୟାତ୍ମିକ ବିଶ୍ୱାସ ପ୍ରକଟିତ ହୋଇଛି ଏହି ଗଳ୍ପରେ । ଗାଳ୍ପିକ ଗଳ୍ପନାୟକ ରୂପେ ସ୍ୱୟଂ ଅବତୀର୍ଣ୍ଣ ହୋଇ ନିଜ ମନଗହନକୁ ପ୍ରଦର୍ଶନ କରିଛନ୍ତି । ବିଶୁଦ୍ଧ ଗ୍ରାମୀଣ ଭାଷା, ଶିଶୁଗୀତ, ପ୍ରତୀକ ଓ ମିଥ୍‌ର ପ୍ରୟୋଗ, ଉତ୍କଣ୍ଠାପୂର୍ଣ୍ଣ ପ୍ରବାହ, ଅମୀମାଂସିତ ପରିଣତି ମନମର୍ମରକୁ ଏକ ମନନଶୀଳ ଗଳ୍ପ ରୂପେ ପରିଚୟ ପ୍ରଦାନ କରିଛି ।

## ଶାନ୍ତନୁଙ୍କ ଗଳ୍ପମାନସର ସ୍ୱରୂପ

ଶାନନ୍ତୁ ଆଚାର୍ଯ୍ୟଙ୍କ ଗଳ୍ପଗୁଡ଼ିକରେ ଅଧୁନାତନ ଭାରତବର୍ଷର ରାଜନୈତିକ, ସାମାଜିକ, ପାରିବାରିକ, ସାଂସ୍କୃତିକ, ଆଧାତ୍ମିକ କ୍ଷେତ୍ରରେ ସଂଘଟିତ ସାଧାରଣ ଓ ଅସାଧାରଣ ଘଟଣାଗୁଡ଼ିକ ସ୍ଥାନ ପାଇଛି । ସାମାଜିକ ଓ ରାଜନୈତିକ ଘଟଣାର ସମ୍ମିଶ୍ର ପୃଷ୍ଠଭୂମିରେ ପଡ଼ୋଶୀ, କ୍ଲାସ୍‌ମେଟ୍, ହିଟ୍‌ଲର, ଆଧୁନିକ ରାକ୍ଷସ, ଇନ୍ଦ୍ର ଓ ଇନ୍ଦୁର, ପିଠି, ସତ୍ୟାଗ୍ରହୀ, ସନ୍ନ୍ୟାସୀ ଓ କୁକୁର, ଗାନ୍ଧିଭବନରେ ଭୂତ, ଟେକ୍‌ନିକ୍, ଅଲିମୁଦ୍ଦିନ, ଅସତ୍ୟ ଯୁଗର ପଦଧ୍ୱନି ପ୍ରଭୃତି ଗଳ୍ପ ରଚିତ ।

ସ୍ୱାର୍ଥାନ୍ଧ ଡାକ୍ତର, ଓକିଲ, ଏମ୍.ଏଲ୍.ଏ ପ୍ରଭୃତି ପ୍ରଭାବଶାଳୀ ବ୍ୟକ୍ତିମାନେ ଭୂତକୋଠିର ମାୟା ସଦୃଶ ଗଣତନ୍ତ୍ରର ସୁଖ, ସୁବିଧା, ସୁଶାସନର ପ୍ରଲୋଭନ ଦେଖାଇ ଶିଶୁରୂପକ ସାଧାରଣ ସରଳ ଜନତାକୁ ଶୋଷଣ କରିବାର ଇଙ୍ଗିତପୂର୍ଣ୍ଣ ମତପ୍ରକାଶ ପାଏ ପଡ଼ୋଶୀ ଗଳ୍ପରେ । ଏମ୍.ଏଲ୍.ଏ ବା ମନ୍ତ୍ରୀମାନେ କ୍ଷମତାମତ୍ତ ହୋଇ ନିଜର ସହପାଠୀର ଅଭିନନ୍ଦନକୁ ଉପେକ୍ଷା ପୂର୍ବକ ତା' ପ୍ରତି ଗୁଳି ଚଳାଇବାର ନିର୍ଦ୍ଦେଶ ଦିଅନ୍ତି କ୍ଲାସ୍‌ମେଟ୍ ଗଳ୍ପରେ । ହିଟ୍‌ଲର୍ ଗଳ୍ପରେ ଦୁର୍ନୀତିଗ୍ରସ୍ତ ବି.ଡି.ଓ, ଥାନାବାବୁ ପ୍ରମୁଖଙ୍କ ସହାୟତାରେ ଅତ୍ୟାଚାରୀ ଯୁବକର ଅତ୍ୟାଚାର ହିଟ୍‌ଲରଙ୍କ ଏକଛତ୍ରବାଦ ଶାସନ ପରି ବୃଦ୍ଧି ହୁଏ । ସ୍ୱାର୍ଥନ୍ୱେଷୀ ଲମ୍ପଟ ପ୍ରଶାସକ ପ୍ରବଞ୍ଚନାର ଆଶ୍ରୟ ନେଇ ସର୍ବସାଧାରଣ ସମ୍ପତ୍ତି ପାର୍କକୁ କରାୟତ୍ତ କରେ ଆଧୁନିକ ରାକ୍ଷସ ଗଳ୍ପରେ । ଏସବୁ ଗଳ୍ପରେ କ୍ଷମତାମତ୍ତ ଶୋଷକ ବ୍ୟଙ୍ଗବିଦ୍ରୂପର ଶରବ୍ୟ ହୋଇଥିବାବେଳେ ସାଧାରଣ ଶୋଷିତ ପ୍ରତି ସମ୍ବେଦନଶୀଳତା ପ୍ରକାଶ ପାଇଛି । ଦୁର୍ନୀତି ଜୀବନର ସବୁଜିମାକୁ କିଭଳି କାଳିମାରେ ପରିଣତ କରିଛି ତାହା ହେଉଛି ପ୍ରୋକ୍ତ ଗଳ୍ପଗୁଡ଼ିକର ସାରାଂଶ । ଦୁର୍ନୀତିର ବିନାଶ ସାଧନ ନିମନ୍ତେ ଏ ପରିପ୍ରେକ୍ଷୀରେ ଦୁର୍ବାର ଗଳ୍ପ ବିଚାର୍ଯ୍ୟ ।

ଦୁର୍ନୀତିର ମୂଳୋତ୍ପାଟନ ନିମନ୍ତେ ନିଷ୍ଠୁର କର୍ତ୍ତବ୍ୟ ପରାୟଣତା ଓ ମୋହହୀନ ଏକାଗ୍ରତା ଏକାନ୍ତ ପ୍ରୟୋଜନ । କର୍ତ୍ତବ୍ୟ ପୀଠରେ ପ୍ରିୟାପ୍ରୀତିକୁ ବଳିଦେବାକୁ ପଡ଼ିବ । ଦୁର୍ବାର ଗଳ୍ପର ଗଳ୍ପନାୟକ ଦୁର୍ନୀତି ରୂପକ ମୂଷାକୁ ନିଜର ଆସବାବପତ୍ର ଭାଙ୍ଗିଯିବା ଭୟରେ ବାଡ଼େଇ ପାରି ନ ଥିବାବେଳେ ତାଙ୍କର ପୁତ୍ର ମୂଷାକୁ ମାରିବା

ନିମନ୍ତେ ନିଜର ମା' ଗୋଡ଼କୁ ମଧ୍ୟ ବାଡ଼େଇ ଦିଅନ୍ତି । ଗାନ୍ଧିକ ଦୁର୍ନୀତିକୁ ବିନାଶ କରିବାର ଦାୟିତ୍ୱ ଯୁବ ସମାଜ ହାତରେ ନ୍ୟସ୍ତ କରିଛନ୍ତି ।

ହୃଦକୋଲପ, ଭୁଲିଗଲୁକିରେ, ଅରଣ୍ୟର ଚୂଳ, + ଓ - ୦ ଆଦି ଗଳ୍ପଗୁଡ଼ିକରେ ପ୍ରତିବିମ୍ବିତ ହୋଇଛି ଭାରତୀୟ ପରମ୍ପରା, ସଂସ୍କୃତି ଓ ଆଦର୍ଶ ।

ହୃଦକୋଲପ ଗଳ୍ପରେ ଗାନ୍ଧିକଙ୍କ ଆଧ୍ୟାତ୍ମିକ ଜାଗରଣ ଦ୍ୱାରା ସଂକୀର୍ଣ୍ଣ ଓ ସଂଶୟ ମନୋଭବ ଦୂର ହେବା ସହିତ ପିତୃତର୍ପଣ ପରମ୍ପରା ପ୍ରତି ଆସ୍ଥା ପ୍ରକାଶ ପାଇଛି । ଯାହାଫଳରେ ପିତୃତର୍ପଣ ନିମନ୍ତେ ଗୋଦାବରୀ ନଦୀକୁ ତମ୍ବା ପଇସା ଫିଙ୍ଗି ଭାରତୀୟ ପରମ୍ପରାକୁ ସେ ସମ୍ମାନ ଦେଖାଇଛନ୍ତି । ଭୁଲିଗଲୁକିରେ ଗଳ୍ପରେ ଉତ୍କଳର ମଉଡ଼ମଣି ଗୋପବନ୍ଧୁ ଦାସଙ୍କର ତ୍ୟାଗ ଓ ଆତ୍ମୋତ୍ସର୍ଗର ସ୍ୱର ଝଙ୍କୃତ ହୁଏ । ଯେଉଁ ସ୍ୱର ଭାରତର ଚିରନ୍ତନ ଆଦର୍ଶ । ଭାରତୀୟ ସଂସ୍କୃତି ବିଶେଷତଃ ହିନ୍ଦୁ ସଂସ୍କୃତିର ଉପାସ୍ୟ ଗୋରୁମାନଙ୍କର ମହତ୍ତ୍ୱ ବୃଦ୍ଧି ପାଇଛି ଅରଣ୍ୟର ଚୂଳ ଗଳ୍ପରେ । ଏଥିରେ ଗୋରୁମାନଙ୍କ ଠାରେ ଦେବତୁଲ୍ୟ ଋଷିର ଅନ୍ୱେଷା କରାଯିବା ସହିତ ସହର ସଫେଇ କରିବାର ଭାବନା ପ୍ରକାଶ ପାଇଛି । ସହର ସଫେଇରୁ ଶୁଦ୍ଧପୂତ ଭାରତୀୟ ଜୀବନାଦର୍ଶର ସୂଚନା ମିଳେ । + ଓ - ୦ ଗଳ୍ପରେ ଭାରତୀୟ ଆଦର୍ଶ ଜୀବେଦୟା ଓ ଆତ୍ମୋତ୍ସର୍ଗ ପରୀକ୍ଷିତ ହୋଇଛି । ଭାରତୀୟ ସଂସ୍କୃତି, ପରମ୍ପରାର ମହିମା ଗଳ୍ପଗୁଡ଼ିକରେ ପ୍ରଖ୍ୟାପିତ ହେଲେ ମଧ୍ୟ କେତେକ ଗଳ୍ପରେ ସଂସ୍କୃତିର ଅଧୋଗତି ପରିଦୃଶ୍ୟ ହୁଏ । ଏହି ଅବକ୍ଷୟ ସଂସ୍କୃତିର ସାକ୍ଷ୍ୟ ପ୍ରଦାନ କରେ ଅପଶବ୍ୟ, ମହାକବି ସାକ୍ଷୀ ଆଦି ଗଳ୍ପ ।

ଅପଶବ୍ୟ ଗଳ୍ପରେ ସାଂପ୍ରତିକ ମାନବ, ଉଗ୍ର ଅର୍ଥ ଲାଳସାରେ ନିଜ ଦେଶର ପ୍ରାଣଶକ୍ତି ନିହିତ ପବିତ୍ର ଦେବାଳୟର ମୂର୍ତ୍ତିକୁ ବିକ୍ରି କରେ । ଏପରିକି ଏହି ଅର୍ଥାନ୍ଧମାନେ ଅର୍ଥ ପାଇଁ ନିଜ ସ୍ତ୍ରୀର ଇଜ୍ଜତ ବିକ୍ରି କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ସ୍ତ୍ରୀ ଅରାଜି ହେଲେ ସ୍ୱହସ୍ତରେ ପୋଡ଼ି ମାରିବାକୁ ତିଳେ କୁଣ୍ଠାବୋଧ କରନ୍ତି ନାହିଁ । ମାନବରୂପୀ ଦାନବମାନଙ୍କ ଦ୍ୱାରା ସ୍ୱଦେଶୀ ସଂସ୍କୃତି ତା'ର ବିଶେଷତ୍ୱ ହରାଏ । ବିଦେଶୀମାନଙ୍କ ଦୃଷ୍ଟିରେ ଭାରତୀୟ ସଂସ୍କୃତି ଯଥାମାନ୍ୟ ପାଏ ନାହିଁ ଓ ଦେଶରେ ବ୍ୟଭିଚାର ବୃଦ୍ଧିପାଏ । ବ୍ୟଭିଚାରର ଦୃଶ୍ୟ ଦେଖିବାକୁ ମିଳେ ମହାକବି ସାକ୍ଷୀ ଗଳ୍ପରେ । ଆସୁରିକତା ପ୍ରବୃତ୍ତି ଯୋଗୁଁ ମହାକବି ଜୟଦେବଙ୍କ ଜନ୍ମମାଟିରେ

ନିଷ୍ପାପ କିଶୋରୀ ଧର୍ଷିତ ହୋଇ ମୃତ୍ୟୁବରଣ କରିଛି । ସାଧାରଣ ଜନତାଙ୍କ ଭ୍ରାନ୍ତ ପ୍ରତିକ୍ରିୟା ପ୍ରକାଶ ପାଏ ବହିଃରାଜ୍ୟ ଯାତ୍ରୀଙ୍କ ଉପରେ । ଯଦ୍ୱାର ସଂସ୍କୃତିସମ୍ପନ୍ନ ପୀଠ ମହାକବିଙ୍କ ଜନ୍ମସ୍ଥାନ ଉପହସିତ ହୁଏ । ଜଡ଼ବାଦୀ ଓ ସଂସ୍କୃତି ବିରାଗୀ ଜନତାଙ୍କ ଯୋଗୁଁ ଦେଶର ପ୍ରଥା ପରମ୍ପରା ବିପର୍ଯ୍ୟସ୍ତ ହୋଇଛି । ଜାତୀୟ ଶୋକର ଅଧିକାରୀ ଗଳ୍ପରେ ନିଜକୁ ହିନ୍ଦୁ ଭାବେ ଗର୍ବିତ ଓ ଗୌରବାନ୍ୱିତ ମନେକରୁଥିବା ଭାରତୀୟ ନିଜ ସଂସ୍କୃତି ଓ ପରମ୍ପରାର ଅବମାନନା କରେ ।

ଶାନ୍ତନୁ ଆଚାର୍ଯ୍ୟଙ୍କ ଉପନ୍ୟାସ ପରି ଗଳ୍ପରେ ଆଧ୍ୟାତ୍ମିକ ଅଭୀପ୍ସା ମୁଖ୍ୟସ୍ଥାନ ଗ୍ରହଣ କରିଛି । ଅରଣ୍ୟର ଚୂଳ, ହୃଦକୋଲପ, ଆମ ମାଉସୀ, ହରିଜନ, ଶେଷ ଉତ୍ତର, ଅଦିନ ବଉଳ, ଆଦ୍ୟ ସକାଳ, ଭକ୍ତଲୋକ, ଚାଲ ସେଇଠିକି ଯୋଉଠି ଭଗବାନ ଅଛନ୍ତି, ବାଘ ଖୋଜିବା ନା ଗାଈ ଜଗିବା ପ୍ରଭୃତି ଗଳ୍ପରୁ ଏହାର ମୂଲ୍ୟାଙ୍କନ କରାଯାଇପାରେ ।

ପାର୍ଥିବ ସୁଖସ୍ୱାଚ୍ଛନ୍ଦ୍ୟ ସଂପର୍କିତ ସଂକୀର୍ଣ୍ଣତା ବା ଆବିଳତାକୁ ଦୂର କରି ଭାଗବତର ଶାଶ୍ୱତ ଭାବ ରସରେ ଅନୁପ୍ରାଣିତ ହେବା ନିମନ୍ତେ ଅରଣ୍ୟର ଚୂଳ ଗଳ୍ପ ବାର୍ତ୍ତା ଦିଏ । ଅଳିଆ ଆବର୍ଜନା ପରିଷ୍କାର ପାଇଁ ସହରରେ ଆରମ୍ଭ ହୁଏ ଝାଡୁ ସଫେଇ । ଗୋରୁମାନେ ଋଷିରେ ପରିଣତ ହେବା ଓ ଭାଗବତ ରସରେ ଉଦ୍‌ବୁଦ୍ଧ ହେବାର ଇଙ୍ଗିତ ଦିଏ ଶୁଦ୍ଧପୂତ ଜୀବନ ପରିଚର୍ଯ୍ୟା । ହୃଦ କୋଲପ ଗଳ୍ପରେ ଆଧ୍ୟାତ୍ମିକ ଜାଗରଣ ହେବାଦ୍ୱାରା ଗାଳ୍ପିକଙ୍କ ସଂବୃତ ହୃଦକବାଟ ହୋଇଛି ବିବୃତ । ଶାଶ୍ୱତ ପ୍ରେମୀଯୁଗଳ ଗୋପାଳ ଓ ରାଧା ନାମଜନିତ ରହସ୍ୟ ବ୍ୟଞ୍ଜକ ଦ୍ୱାରା ଦିବ୍ୟାନୁଭୂତିର ଉପଲବ୍ଧି ହୁଏ ଆମ ମାଉସୀ ଗଳ୍ପରେ । ହରିଜନ ଗଳ୍ପରେ ଆତ୍ମାର ନିର୍ବିକାରତ୍ୱ ଓ ସାର୍ବିକ କଲ୍ୟାଣ ଚେତନା ପ୍ରକାଶ ପାଇଥିବା ବେଳେ ଶେଷ ଉତ୍ତର ଓ ଅଦିନ ବଉଳ ଗଳ୍ପ ଦ୍ୱୟରେ ସତ୍ୟ ଓ ଜୀବନ ପ୍ରତି ଆସ୍ଥା ପ୍ରକଟ ହୋଇଛି । ସାଂସାରିକ ଅନାଶକ୍ତ ନିଷ୍ପାପ ଅର୍ଦ୍ଧନଗ୍ନ ପିଲାଟି ନିକଟରେ କାଳରୂପକ ବ୍ୟାଘ୍ର ହୋଇଛି ପରାସ୍ତ ଆଦ୍ୟ ସକାଳ ଗଳ୍ପରେ । ବିଧର୍ମୀ ବ୍ୟକ୍ତି ଚିତ୍ତରେ ଭକ୍ତିର ସ୍ଫୁରଣ ଅସମ୍ଭବ ନ ହେବାର ପ୍ରମାଣ ଦିଏ ଭକ୍ତଲୋକ ଗଳ୍ପ । ଚାଲ ସେଇଠିକି ଯୋଉଠି ଭଗବାନ ଅଛନ୍ତି ଗଳ୍ପରେ ଭାରତ ଦେବଭୂମି ବୋଲି ପ୍ରମାଣିତ ହୁଏ ପାଶ୍ଚାତ୍ୟ

ଜଡ଼ବାଦୀଙ୍କ ଦୃଷ୍ଟିରେ । ଜୀବନ ଓ ମୃତ୍ୟୁ, ଜୀବାତ୍ମା ଓ ପରମାତ୍ମା ସମ୍ବନ୍ଧରେ ତାତ୍ତ୍ୱିକ ବ୍ୟାଖ୍ୟା ପ୍ରଦାନ କରେ ବାଘ ଖୋଜିବା ନା ଗାଇ ଜଗିବା ଗଳ୍ପ । ଏହି ପୃଷ୍ଠଭୂମିରେ ବିଚାରଯୋଗ୍ୟ ଅନ୍ୟ ଏକ ଗଳ୍ପ ଏ ଚଢ଼େଇର ନାଁ କ'ଣ । ଏଥିରେ ଆଧୁନିକ କର୍ମବ୍ୟସ୍ତ ମାନବ କର୍ମର କୋଳାହଳ ମଧ୍ୟରେ ଶୁଣିବାକୁ ପାଏ ଚିରନ୍ତନ ପ୍ରକୃତିର ଆହ୍ୱାନ ।

ସୂକ୍ଷ୍ମ ମାନବୀୟ ଚରିତ୍ରଚର୍ଯ୍ୟା ଓ ଅବକ୍ଷୟ ସମାଜର ଚିତ୍ର ଶାନ୍ତନୁଙ୍କ ଗଳ୍ପରେ ଉଦ୍‌ଭାସିତ । ଏ ଗଳ୍ପଗୁଡ଼ିକ ହେଲା– ନିଉଟ୍ରନ୍ ବୋମା ବା ପ୍ରେମର ଔଷଧ, ପ୍ରୋଜେକ୍ଟ ଟାଇଗର, ସର୍ପଯାନ, ଜ୍ଞାନଦାନ୍ତ, ଅଦିନବଉଳ, ପ୍ରତ୍ୟାବର୍ତ୍ତନ, ବଣ ଆଉ ମଣିଷ, ତାଙ୍କ ସ୍ୱାଇଲିନ୍ ସ୍ୱାଟ୍, କଥୋପକଥନ ଗତ ରାତିର ଇତ୍ୟାଦି ।

ନିଉଟ୍ରନ୍ ବୋମା ବା ପ୍ରେମର ଔଷଧ ଗଳ୍ପରେ ଆଧୁନିକ ମାନବର ଆଦିମ ଦାନବିକ ପ୍ରବୃତ୍ତି ସମ୍ବନ୍ଧରେ ଆଲୋକପାତ କରାଯାଇଛି । ଅଗଣତାନ୍ତ୍ରିକ ଯୋଜନା ଓ ପାଶବିକାଚରଣର ବର୍ଣ୍ଣନା ଦେଖିବାକୁ ମିଳେ ପ୍ରୋଜେକ୍ଟ ଟାଇଗର ଗଳ୍ପରେ । ନାରୀ ସ୍ୱାଧୀନତା ଓ ଡାଆଣୀ ପରମ୍ପରା ପ୍ରତି ଆସ୍ଥାପ୍ରକଟ କରେ ସର୍ପଯାନ ଗଳ୍ପ । ଜ୍ଞାନୀ ବ୍ୟକ୍ତିର କୁପ୍ରବୃତ୍ତିର ପରିଚୟ ଦିଏ ଗଳ୍ପ ଜ୍ଞାନଦାନ୍ତ । ଅଦିନ ବଉଳ ଗଳ୍ପରୁ ମଣିଷ ଉଚ୍ଚଶିକ୍ଷିତ ହେଲେ ମଧ୍ୟ ପଶୁ ଗଧିଆର ପ୍ରବୃତ୍ତି ଧାରଣ କରି ଉପହସିତ ହେବାର ଇଙ୍ଗିତ ମିଳେ ।

ଚତୁର୍ଥ ରାତି, ଏଇ ଶେଷ ପଦଟି, ତୁମେ ଓ ମୁଁ, ଇନ୍ଦ୍ର ଓ ଇନ୍ଦୁର ଇତ୍ୟାଦି ଗଳ୍ପରେ ଯୌନ ଚେତନା ପ୍ରତିଭାତ ହୋଇଛି । ଯୌନ ଚେତନା ମଧ୍ୟ ଦେଇ ଗାଳ୍ପିକ ଚିରନ୍ତନ ମାନବିକ ଭାବସତ୍ୟକୁ ଉଦ୍‌ଘାଟନ କରିଛନ୍ତି । ଚତୁର୍ଥ ରାତି ଗଳ୍ପରେ ବୟସ୍କ ବ୍ୟକ୍ତି ନିଜର କନ୍ୟା ବୟସ୍କା ଚତୁର୍ଥ ପକ୍ଷୀୟା ସ୍ତ୍ରୀ କୋଳରେ ମୁଣ୍ଡ ଥାପି ଶୋଇଥିବା ବେଳେ ତାଙ୍କ ଯୌନ ଚେତନାର ଲୟ ଘଟିବା ସହିତ ଶିଶୁ ସୁଲଭତା ପ୍ରକାଶ ପାଇଛି । ଗାଳ୍ପିକଙ୍କ ଭାଷାରେ– "ମୁଁ ଉନ୍ମତ୍ତ ପରି ନାଚିବାକୁ ଲାଗିଲି ଆଉ ସେତିକିବେଳେ ମୋର ଅଜଣାତରେ ଛୋଟ ପିଲାଟି ପରି ମୁଁ ଚର୍‌ଚର୍‌ ମୁତି ପକାଇଲି ।"[୮] ବୟସ୍କ ବ୍ୟକ୍ତିଟିର ନଶ୍ୱର ଯୌନ ଚେତନା ଅବିନଶ୍ୱର ଜୀବନ ଚେତନାରେ ରୂପାନ୍ତର ହୋଇଛି । ଏଇ ଶେଷପଦଟି ଗଳ୍ପରେ

ଯୌନଚେତନା ଜୀବନଧର୍ମୀ ହୋଇଛି । ପତ୍ନୀକୁ ମା ମନେ କରିବା ଦ୍ୱାରା ସୋହାଗ ହୋଇଛି ଉପେକ୍ଷିତ । ଏହି ପ୍ରସଙ୍ଗରେ ନାରୀ ମନସ୍ତତ୍ତ୍ୱର ନିଚ୍ଛକ ଆଲେଖ୍ୟ ପ୍ରଦାନ କରି ଗାଳ୍ପିକ କହନ୍ତି– "ଯେତେବେଳେ ଏମିତି ଦିନ ଆସିବ ଏଇଘରକୁ ସେତେବେଳେ ମୋ ପିଲାମାନେ, ଆଉ ତାଙ୍କ ସାଙ୍ଗରେ ମିଶି ତୁମେ ବି ଖାଲି ମା' ମା' ହେଉଥିବ; କିନ୍ତୁ ମୋ ପ୍ରତି କାହାରି ହୃଦୟରେ କାଣିଚାଏ ହେଲେ ସୋହାଗ ନ ଥିବ, ସେତେବେଳେ ସେହି ମା' ପଦର ବୋଝ ବୋହି ଏ ଘରେ ମୁଁ କେମିତି ବଞ୍ଚିବି– କେମିତି ବଞ୍ଚିବି !"[୯]

ଶାନ୍ତନୁଙ୍କ ଗଳ୍ପରେ ମନସ୍ତାତ୍ତ୍ୱିକ ବର୍ଣ୍ଣନା ଅତି ପ୍ରାଞ୍ଜଳ । ମନମର୍ମର, ମଣ୍ଟୁ, ଏକ ଡନ୍‌କୁସ୍ତୀୟ ସନ୍ଧ୍ୟାର ଟ୍ରାଜେଡ଼ି, ପୁତ୍ ନରକ ପ୍ରଭୃତି ଗଳ୍ପରେ ଏହାର ସୁପ୍ରତୁଳ ବର୍ଣ୍ଣନା ଦେଖିବାକୁ ମିଳେ । ମନମର୍ମର ଗଳ୍ପରେ ଗାଳ୍ପିକ ଶିଶୁପୁତ୍ର କନ୍ୟାଙ୍କ ଖେଳକୁ ଲକ୍ଷ୍ୟକରି ନିଜ ଶୈଶବର ଦୁଃଖଦ ସ୍ମୃତିକୁ ରୋମନ୍ଥନ କରିଛନ୍ତି । ଯନ୍ତ୍ରଣାଦଗ୍ଧ ମନର ସ୍ୱରୂପ ଦେଖିବାକୁ ମିଳେ ମଣ୍ଟୁ ଗଳ୍ପରେ । ପୁତ୍ ନରକ ଗଳ୍ପ ସନ୍ତାନହୀନା ସ୍ତ୍ରୀ ଲୋକଟିର ବିଳପିତ ହୃଦୟର ଅକୁହା ବେଦନା ପ୍ରକାଶ କରେ ।

ମୂର୍ତ୍ତିକା ଦର୍ଶନ ଗଳ୍ପରେ ସତୁରି ବର୍ଷ ବୟସ୍କ ବୃଦ୍ଧ ନଇବଢ଼ିକୁ ଅବଜ୍ଞା କରି ଧାନବିଲରୁ ବାଲୁଙ୍ଗା ବାଛୁଥାଏ । ମୃତ୍ୟୁର ଦ୍ୱାରଦେଶରେ ଉପନୀତ ଜୀର୍ଣ୍ଣଶୀର୍ଣ୍ଣ ବୃଦ୍ଧର ଜୀବନ ଓ ଜୀବିକା ପ୍ରତି ଗଭୀର ମୋହ ପ୍ରକଟିତ ହୋଇଛି । ଜୀବନ ମହାଜୀବନ ଆଡ଼କୁ ସର୍ବଦା ଧାବମାନ । ତାହାର ସୂଚନା ପ୍ରଦାନ କରେ ଅରଣ୍ୟର ଚୂଳ ଗଳ୍ପ । ଏହିପରି ଅନେକ ଗଳ୍ପରେ ଜୀବନ ଓ ଧରା ପ୍ରତି ଗାଳ୍ପିକଙ୍କ ମମତ୍ୱବୋଧ ଦୃଷ୍ଟିଗୋଚର ହୁଏ ।

ଭାରତରେ ନାରୀ ନିର୍ଯାତନାର ଏକ ଜ୍ୱଳନ୍ତ ପ୍ରମାଣ ବହନ କରେ ମାଈଁଙ୍କ ମ୍ୟାପ୍ ଗଳ୍ପ । ଶିଶୁ ଓ ନାରୀ ନିର୍ଯାତନାମୂଳକ ଅନ୍ୟ ଏକ ଗଳ୍ପ ହେଲା କୋକି । ଉତ୍ତମ ସିଂ ପାଇଁ ଶୋକ ଗଳ୍ପରେ ଗଭୀର ମାନବିକ ସମ୍ବେଦନଶୀଳତା ପ୍ରକାଶ ପାଇଛି । ଅବସରପ୍ରାପ୍ତ କର୍ମଚାରୀଙ୍କ କରୁଣ କାହାଣୀର ଦୃଶ୍ୟ ଦେଖିବାକୁ ମିଳେ ପେନ୍‌ସନ୍ ଫାଇଲ୍ ଗଳ୍ପରେ ।

ଶାନ୍ତନୁ ଆଚାର୍ଯ୍ୟ ଭାଷା ଓ ଶୈଳୀ ଦୃଷ୍ଟିରୁ ଫକୀରମୋହନଙ୍କ ଯୋଗ୍ୟ ଦାୟାଦ ହୋଇଥିବା ବେଳେ ମନୋଜ ଦସ, ମହାପାତ୍ର ନୀଳମଣି ସାହୁ, ଅଚ୍ୟୁତାନନ୍ଦ ପତି ପ୍ରମୁଖ ଗାଳ୍ପିକଙ୍କ ଗଳ୍ପ କଥନ ଶୈଳୀରୁ ବ୍ୟତିକ୍ରମ। ସେ କାହାଣୀ ଆରମ୍ଭ କରନ୍ତି, ମାତ୍ର ତା'ପରେ ଘଟଣାଗୁଡ଼ିକ ପରସ୍ପର ଗୋଡ଼ିଆ ଗୋଡ଼ି ହୋଇ ଗଳ୍ପକୁ ଆଗେଇ ନିଅନ୍ତି। ଗଳ୍ପର ଉତ୍କଣ୍ଠା ପ୍ରାରମ୍ଭରୁ ପରିଣତି ପର୍ଯ୍ୟନ୍ତ ବଜାୟ ରଖିବା ନିମନ୍ତେ ସେ ସତତ ଚେଷ୍ଟିତ। ତାଙ୍କ ଗଳ୍ପଗୁଡ଼ିକରେ ପ୍ଲଟ୍ ଅପେକ୍ଷା ଥିମ୍‌ର ଗୁରୁତ୍ୱ ଅଧିକ। ନାଟକୀୟତା ଓ ବୌଦ୍ଧିକତାରେ ଗଳ୍ପଗୁଡ଼ିକ ଋଦ୍ଧିମନ୍ତ। ଗଳ୍ପରେ ଫାଣ୍ଟାସିର ପ୍ରୟୋଗ ବେଶ୍ ସୁସ୍ପଷ୍ଟ। ଫାଣ୍ଟାସିର ମାଧ୍ୟମ ହୋଇଛି ପ୍ରସଙ୍ଗୋଚିତ ପ୍ରତୀକ। ଦୁର୍ନୀତିଗ୍ରସ୍ତ ସମାଜର ଆଲେଖ୍ୟ ପ୍ରଦାନକାରୀ ଦୁର୍ବାର ଗଳ୍ପରେ ମୂଷା ହେଉଛି ଦୁର୍ନୀତିର ପ୍ରତୀକ। ଅଦିନ ବଉଳ ଗଳ୍ପର ଗଧିଆ ଏବଂ ନିଉଟ୍ରନ୍ ବୋମା ବା ପ୍ରେମର ଔଷଧ ଗଳ୍ପର ଏଣ୍ଡୁଅ କୁପ୍ରବୃତ୍ତିର ପ୍ରତୀକ। ଏହିସବୁ ପ୍ରତୀକମାନଙ୍କ ଦ୍ୱାରା ଗାଳ୍ପିକ ଦୁଃଶ୍ଚରିତ୍ର ବ୍ୟକ୍ତିମାନଙ୍କ ପ୍ରତି ବିଦ୍ରୂପୋକ୍ତି ପ୍ରକାଶ କରିଛନ୍ତି। ପୁନଶ୍ଚ ଅରଣ୍ୟର ଚୂଳ ଗଳ୍ପର ଜନ୍ଦା ନିଷ୍ପେଷିତ ଚରିତ୍ରର ପ୍ରତୀକ ହୋଇଥିବାବେଳେ ନିଉଟ୍ରନ୍ ବୋମା ବା ପ୍ରେମର ଔଷଧ ଗଳ୍ପର ବୁଢ଼ୀଆଣୀ ସରଳ ନିରୀହ ବ୍ୟକ୍ତିର ପ୍ରତୀକ। ଏମାନଙ୍କ ପ୍ରତି ଗାଳ୍ପିକଙ୍କର ସମ୍ବେଦନଶୀଳତା ପରିଲକ୍ଷିତ ହୁଏ। ଗାଳ୍ପିକ ତାଙ୍କ ଆଧ୍ୟାତ୍ମିକ ଚେତନାର ପରିପ୍ରକାଶ ନିମନ୍ତେ ଫାଣ୍ଟାସିଧର୍ମୀ ପ୍ରତୀକର ବ୍ୟବହାର କରିଛନ୍ତି। ସର୍ପଯାନ ଗଳ୍ପରେ ସର୍ପ ମୁକ୍ତିର ବ୍ୟଞ୍ଜକ ହୋଇଥିବାବେଳେ ଆଦ୍ୟ ସକାଳ ଗଳ୍ପରେ ପକ୍ଷୀ ଉପନିଷଦୀୟ ପରମାତ୍ମା ରୂପୀ ସର୍ବଜ୍ଞ ଉଦାର ପକ୍ଷୀର ପ୍ରତୀକ। ଆଦ୍ୟ ସକାଳ ଗଳ୍ପର ବ୍ୟାଘ୍ର କାଳର, ପୁଷ୍ପବତୀ ବୃକ୍ଷ ମାୟାର, ଅଧା ଲଙ୍ଗଳା ପିଲାଟି ବିଷୟବାସନାହୀନ ଜୀବାତ୍ମାର ପ୍ରତୀକ ଅଟେ। ଗାଈ ଖୋଜିବା ନା ବାଘ ଜଗିବା ଗଳ୍ପରେ ଗାଈ ଜୀବନର ଓ ବ୍ୟାଘ୍ର ମୃତ୍ୟୁର ପ୍ରତୀକ। ତାଙ୍କ ପ୍ରତୀକଟିକୁ ଠିକ୍ ଭାବେ ବୁଝିପାରିଲେ **ଗଳ୍ପର** ଭାବ ଆପେ ଆପେ ଧରାଦିଏ।

ଶାନ୍ତନୁ ଆଚାର୍ଯ୍ୟ ଲୋକମୁଖର ଭାଷାକୁ ଗଳ୍ପରେ ବ୍ୟବହାର କରିଛନ୍ତି। ତାଙ୍କର ଭାଷା ଜୀବନ୍ତ ଓ ସରଳ। ସାଧାରଣତଃ ଅଶ୍ଳୀଳ ଅର୍ଥରେ ପରିଚିତ ଅନେକ ଭାଷା ତାଙ୍କ ସୃଷ୍ଟିରେ ଦିବ୍ୟଜୀବନ ଲାଭ କରିଛି। ଶାନ୍ତନୁଙ୍କ ଗଳ୍ପରେ

ଫକୀରମୋହନଙ୍କ ଗଦ୍ୟରୀତି ଓ ସମ୍ପ୍ରତି କଥିତ, ଲିଖିତ ଭାଷା ବିନ୍ୟାସର ପ୍ରୟୋଗ ନିମ୍ନୋକ୍ତ ଉଦାହରଣରୁ ପରିଦୃଶ୍ୟ ।

"ନାଟୁରେ! କେତେ କାଳ ଆମେ ଆଉ ଏଇ ଅସଭ୍ୟ ଶବ୍ଦଗୁଡ଼ାକୁ ଘିନି ବଞ୍ଚିବାରେ ବାବୁ? ଘୁଅ, ମୂତ, ରକ୍ତ, ପୂଜ, ଜନ୍ଦା, ପିମ୍ପୁଡ଼ି, ଘୁଷୁରି... କେତେ ମୁଁ ଭାବୁଚି ସେଇ ଶବ୍ଦଗୁଡ଼ାକ । କିଛି ତ ଆଉ ମନେପଡୁନି କାହିଁକ? ମୋ ମୁଣ୍ଡରୁ କିଏ ଝାଡ଼ି ନେଇସାରିଲାଣିରେ ନାଟୁ ଆମର ସେଇ ପ୍ରିୟ ଶବ୍ଦଗୁଡ଼ାକୁ! କହ ତ ଥରେ... କହରେ ଟିକିଏ.... କହ ଭଲା ସେଇ ନାଁଗୁଡ଼ାକ ।"[୧୦]

ପୁନଶ୍ଚ, ଆଉ ଏକ ଉଦାହରଣ ହେଲା– "ଖୁସିରେ ମନ୍ଦିର ଗମ୍ଭୀରା ଆଡ଼କୁ ନଇଁନଇଁକା ନିଘାକରି ସେ ମାରୁଥାଏ ଡାକ–ତୋ ମା'କୁ ନିଅ–ହଇରେ ହେ ଶଳା? ଫେଣି ଶୋଇଲୁ? ଆଖି ଫିଟାରେ ଛୋକାର–ଚାହାଁ–ଦେଏ ଖ୍–ଏ କଅଣ ହେଲାଣି ଦୁନିଆଁ? ଚାଉଳ ଦାମ ହେଲାଣି କେତେରେ ନିଆଁଖିଆ! ଦେଖିପାରୁନୁ? ବେଧୁଆ-ପାଣ... ଗୋଇଠାଖିଆ... ପଠାଣ ପୁଅ ଠାକୁର![୧୧]

ତାଙ୍କ ଗଳ୍ପରେ ବିଦେଶୀ ଭାଷାର ବ୍ୟବହାର କିଛି କମ୍ ନୁହେଁ । ଚିତ୍ରକଳ୍ପର ପ୍ରୟୋଗ ଥିଲେ ମଧ୍ୟ ଗଦ୍ୟାତ୍ମକ କଥନଶୈଳୀ ଓ ବିଶୁଦ୍ଧ ଗ୍ରାମୀଣ ଭାଷାର ବହୁଳତା ମଧ୍ୟ ପ୍ରକଟିତ ହୋଇଛି ।

ଶାନ୍ତନୁଙ୍କ ଗଳ୍ପରାଜିରେ ସମାଜର ସବୁ ଶ୍ରେଣୀର ଚରିତ୍ରଙ୍କୁ ଦେଖିବାକୁ ମିଳେ । ମଳିମୁଣ୍ଡିଆ ହରିଜନ, ଜରାଜୀର୍ଣ୍ଣ କୃଷକଠାରୁ ଆରମ୍ଭ କରି ଉଚ୍ଚଜାତି, ଉଚ୍ଚ ପ୍ରଶାସନିକ ଅଧିକାରୀ, ମନ୍ତ୍ରୀ ପର୍ଯ୍ୟନ୍ତ ତାଙ୍କ ଗଳ୍ପରେ ସ୍ଥାନ ପାଇଛନ୍ତି । କେତେକ ଗଳ୍ପରେ ଗାଳ୍ପିକ ନିଜେ ଚରିତ୍ରଟିଏ ହୋଇ ନିଜର ପରିବାର, ବନ୍ଧୁବାନ୍ଧବ, ଅଚିହ୍ନା ବ୍ୟକ୍ତିଙ୍କ ସହିତ କଥୋପକଥନରେ ରତ ଥିବାର ଦେଖିବାକୁ ମିଳେ ।

ଶାନ୍ତନୁଙ୍କ ଗଳ୍ପଗୁଡ଼ିକର ଆଙ୍ଗିକ ଓ ଆତ୍ମିକ ପରସ୍ପର କ୍ଷୀରନୀର ପରି ସଂଶ୍ଳିଷ୍ଟ । ତାଙ୍କ ଗଳ୍ପର ପ୍ରତ୍ୟେକ ଉପାଦାନକୁ ପୃଥକ୍ ଭାବେ ପରିବେଷଣ କରିବା କଷ୍ଟକର ବ୍ୟାପାର । କ୍ରମ ଉତ୍ତରଣରେ ଶାନ୍ତନୁଙ୍କ ଦୃଷ୍ଟିକୋଣ ଅଧିକ ମାର୍ଜିତ ହୋଇଛି । ଗାଳ୍ପିକଙ୍କ ଶ୍ରେଷ୍ଠ ଗଳ୍ପଗ୍ରନ୍ଥ ଚଳନ୍ତି ଠାକୁରର ଅନୁଶୀଳନରୁ ତାଙ୍କ କୃତିତ୍ୱର ଆକଳନ କରାଯାଇପାରେ ।

**ଅନ୍ତଟୀକା :**

୧. ଗାଳ୍ପିକଙ୍କ ସହ ସାକ୍ଷାତକାର, ୦୪-୦୭-୧୯୯୪ ।
୨. ତତ୍ରୈବ ।
୩. ସମ୍ବାଦ, ୨୩-୦୧-୧୯୯୪, ପୃ.୪ ।
୪. ଗାଳ୍ପିକଙ୍କ ସହ ସାକ୍ଷାତକାର, ୦୪-୦୭-୧୯୯୪ ।
୫. ସମ୍ବାଦ, ୨୩-୦୧-୧୯୯୪, ପୃ.୪ ।
୬. ବାଳକୃଷ୍ଣ ଶତପଥୀ-ଆଧୁନିକ ଓଡ଼ିଆ କଥା ସାହିତ୍ୟର ସ୍ୱର ଓ ବ୍ୟଞ୍ଜନ, ପୃ.୧୫୨ ।
୭. ଶାନ୍ତନୁ କୁମାର ଆଚାର୍ଯ୍ୟ-ମନମର୍ମର, ପୃ.୧୪ ।
୮. ଶାନ୍ତନୁ କୁମାର ଆଚାର୍ଯ୍ୟ-ଏଇ ଶେଷ ପଦଟି, ପୃ.୩୪ ।
୯. ତତ୍ରୈବ, ପୃ.୪୬ ।
୧୦. ଶାନ୍ତନୁ କୁମାର ଆଚାର୍ଯ୍ୟ-ଅରଣ୍ୟର ଚୂଳ, ପୃ.୧୫୩ ।
୧୧. ଶାନ୍ତନୁ କୁମାର ଆଚାର୍ଯ୍ୟ-ଅଦିନ ବଉଳ, ପୃ.୧୮ ।



# କଥାବସ୍ତୁ ଚୟନ

କଥାବସ୍ତୁ ହେଉଛି ଗଳ୍ପର ବିଶିଷ୍ଟ ବିଭବ । ଯାହାକୁ ବିଧିସଙ୍ଗତ ବିନିଯୁକ୍ତ କରି ଗାଳ୍ପିକ ଗଳ୍ପର ବିନ୍ୟାସ ମାଧ୍ୟମରେ ନିଜର ଚିନ୍ତାଧାରାକୁ ଅଭିବ୍ୟକ୍ତ କରନ୍ତି । ପ୍ରାଥମିକ ପର୍ଯ୍ୟାୟରେ ଓଡ଼ିଆ କ୍ଷୁଦ୍ରଗଳ୍ପ ଥିଲା କାହାଣୀଧର୍ମୀ । ପରବର୍ତ୍ତୀ ସମୟରେ ସଚ୍ଚି ରାଉତରାୟ, ଗୋପୀନାଥ ମହାନ୍ତି ଓ ସୁରେନ୍ଦ୍ର ମହାନ୍ତି ଆଦି ପ୍ରଖ୍ୟାତ ଗାଳ୍ପିକମାନେ ନିର୍ଦ୍ଦିଷ୍ଟ ଭାବକୁ ନେଇ ଗଳ୍ପର ବିଷୟ ନିର୍ବାଚନ କରିଛନ୍ତି । ଅଖଣ୍ଡ ଜୀବନ ପରିବର୍ତ୍ତେ ଖଣ୍ଡିତ ଜୀବନର ରୂପ କ୍ଷୁଦ୍ରଗଳ୍ପରେ ରୂପାୟିତ ହୋଇଛି । ସାଂପ୍ରତିକ କ୍ଷୁଦ୍ରଗଳ୍ପର କଥାବସ୍ତୁରେ ସମାଜ ସଚେତନତା ସହିତ ବ୍ୟକ୍ତି ଓ ଆତ୍ମସଚେତନତା ପ୍ରକାଶ ପାଇଛି । କ୍ଷୁଦ୍ରଗଳ୍ପରେ ମାନବର ଅନ୍ତଃରୂପକୁ ବିଶ୍ଳେଷଣ କରିବା ହିଁ ଆଜିକାର ଗାଳ୍ପିକର ଆଭିମୁଖ୍ୟ ।

ମାନବର ମନଗହନର ଅକୁହା କଥାକୁ ପ୍ରାଞ୍ଜଳ ଭାବେ କହିବାରେ ଜଣେ ଦକ୍ଷ କଥାଶିଳ୍ପୀ ହେଉଛନ୍ତି ଶାନ୍ତନୁ କୁମାର ଆଚାର୍ଯ୍ୟ । ସେ ମାନବ ମନର ଅତଳ ଗହ୍ୱରକୁ ଯେଉଁଭଳି ଉଦ୍‌ଭାସିତ କରିଛନ୍ତି, ଠିକ୍ ସେହିପରି ସାଧାରଣ ଘଟଣାକୁ ଆଧାର କରି ଅସାଧାରଣ ବିଷୟ ବିନ୍ୟାସରେ ମଧ୍ୟ ପାରଦର୍ଶିତା ଦେଖାଇଛନ୍ତି । ଶାନ୍ତନୁ ଆଚାର୍ଯ୍ୟଙ୍କ କୃତିରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଅନୁଭୂତ ହେଲେ ମଧ୍ୟ ଫାଣ୍ଟାସିଧର୍ମୀ ବୌଦ୍ଧିକତା ତାଙ୍କ ବିଷୟ ବିଭଙ୍ଗରେ ଭିନ୍ନ ସ୍ୱାଦ ଭରିଦିଏ । ଯାହାଫଳରେ ସେ ଅନ୍ୟାନ୍ୟ ଗାଳ୍ପିକମାନଙ୍କଠାରୁ ସ୍ୱତନ୍ତ୍ର ଜଣାପଡ଼ନ୍ତି । ଗାଳ୍ପିକ ଶାନ୍ତନୁ ଗତାନୁଗତିକ ଶୈଳୀରେ ବିଷୟ ଚୟନ କିମ୍ବା ଉପସ୍ଥାପନ କରନ୍ତି ନାହିଁ । ସାଧାରଣ ଓ ଅସାଧାରଣ ଥିମ୍‌କୁ ନେଇ ପ୍ଲଟ୍‌ର ଗଠନ,ନାଟକୀୟ ଉପସ୍ଥାପନ, ବିଜ୍ଞାନ ସିଦ୍ଧାନ୍ତ ବା ଯୁକ୍ତିନିଷ୍ଠ ବକ୍ତବ୍ୟ ପ୍ରକାଶ, ଜଟିଳ ପ୍ରତୀକ ପ୍ରୟୋଗ ପ୍ରଭୃତି

ତାଙ୍କ ବିଷୟ ସଂରଚନାରେ ପରିଦୃଷ୍ଟ ହୁଏ । ଶାନ୍ତନୁଙ୍କ ଗଳ୍ପର ପ୍ରତୀକ ଓ ବ୍ୟଞ୍ଜନାକୁ ଠିକ୍ ରୂପେ ନିରୂପଣ କରି ନ ପାରିଲେ ତାଙ୍କର ବିଷୟବସ୍ତୁ ପାଠକକୁ ଦୁର୍ବୋଧ ଓ ଅସଙ୍ଗତ ମନେହୁଏ । ହଠାତ୍ ହଇଚଇ ସୃଷ୍ଟି କରିବା ବା ମନମତାଣିଆ ପରିବେଶରେ ବିଷୟ ସଂଗଠନ କରିବା ତାଙ୍କ ଗଳ୍ପରେ ଦେଖାଯାଏ ନାହିଁ । ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ଓ ଅତଳ ଗହ୍ୱରରେ ଗର୍ଭିତ ଶାନ୍ତନୁଙ୍କ ଗଳ୍ପର ନିର୍ଯାସକୁ ସହୃଦୟ ପାଠକ ଧୈର୍ଯ୍ୟର ସହ ଆମୂଳଚୂଳ ବରାବର ପାଠ କଲେ ତାହାର ସନ୍ଧାନ ପାଏ । ମାମୁଲି ଘଟଣାକୁ ନେଇ ମୁସ୍କିଲି ଗଳ୍ପ ଗଠନ କରିବା ହେଉଛି ତାଙ୍କର ପ୍ରଧାନ ବୈଶିଷ୍ଟ୍ୟ ।

ଚଳନ୍ତି ଠାକୁର ଗଳ୍ପ ସଂକଳନରେ ଅତି ସାଧାରଣ ଘଟଣା ଓ ବିଭିନ୍ନ ସମସ୍ୟାବଳୀକୁ ନେଇ ଗଳ୍ପର ବିଷୟ କଳ୍ପନା କରାଯାଇଛି । ଏଥିରେ ଥିବା ଗଳ୍ପଗୁଡ଼ିକରେ ଆଧୁନିକ ମାନବର ଅସହାୟତା ଏବଂ ଜୀବନବାଦୀ ଏଷଣା ମୁଖ୍ୟତଃ ସ୍ଥାନ ପାଇଛି । ଭୌତିକ ଓ ଆଧ୍ୟାତ୍ମିକ, ପରମ୍ପରା ଓ ପ୍ରଗତି, ମାନବିକତା ଓ ଦାନବିକତା, ପ୍ରଶାସନିକ ଓ ରାଜନୈତିକ ଭ୍ରଷ୍ଟାଚାର ପ୍ରଭୃତି ବିଷୟକୁ ଭିତ୍ତିକରି ଚଳନ୍ତି ଠାକୁର ଗଳ୍ପ ଗ୍ରନ୍ଥର କଥାବସ୍ତୁ ବିନ୍ୟସ୍ତ ହୋଇଛି ।

## ଚଳନ୍ତି ଠାକୁର

ଜଡ଼ବାଦର ମୋହରେ ଭାରତୀୟ ଜନମାନସ ସଂପ୍ରତି ବିକୃତ । ଅର୍ଥ ଲାଳସାରେ ସ୍ୱଦେଶୀ ସଭ୍ୟତା, ସଂସ୍କୃତିକୁ ବିଦେଶୀ ହସ୍ତରେ ଟେକିଦେବାକୁ ସେ କୁଣ୍ଠିତ ନୁହେଁ । ଭାରତୀୟ ସଭ୍ୟତା, ସଂସ୍କୃତିର ପ୍ରତୀକ ଅମୂଲ୍ୟ କାରୁକାର୍ଯ୍ୟମଣ୍ଡିତ ଶାଶ୍ୱତ ଆତ୍ମା ନିହିତ ଦେବପ୍ରତିମା ତା' ନିକଟରେ ମୃତ ଦେବତା ଭାବେ ପରିଗଣିତ ହୁଏ । ପରିସ୍ଥିତିର ଦାୟରେ ଭାରତର ଦେବତା ଅଚଳନ୍ତିରୁ ହୁଏ ଚଳନ୍ତି । ଭାରତୀୟ ସଂସ୍କୃତି, ବିଶ୍ୱାସର ସଂକଟ ସମୟରେ ଈଶ୍ୱର ବିଭିନ୍ନ ଅବତାର ନେବାର କିମ୍ବା ମନୁଷ୍ୟ ହୃଦୟରେ ଐଶ୍ୱରିକ ସତ୍ତା ପ୍ରକଟିତ ହେବାର ବହୁ ନଜିର ରହିଛି । ଏହାର ସାକ୍ଷ୍ୟ ପ୍ରଦାନ କରେ 'ଚଳନ୍ତି ଠାକୁର' ଗଳ୍ପ ।

ଶିକ୍ଷିତ ଯୁବ ସମାଜକୁ ପ୍ରଲୁବ୍ଧ କରିଛି ଭାରତୀୟ ପ୍ରଶାସନିକ କ୍ଷମତା । ଆଇ.ଏ.ଏସ୍ ଚାକିରି ହୋଇଛି ସେମାନଙ୍କ ପାଇଁ ଇନ୍ଦ୍ରପଦ ତୁଲ୍ୟ । ଅନେକ କୃତୀ

ଛାତ୍ର ବିଜ୍ଞାନ, ବୈଷୟିକ କ୍ଷେତ୍ରରେ ପଛୁଆ ଭାରତବର୍ଷରେ ସେସବୁ ଦିଗକୁ ଉପେକ୍ଷା କରି ଆଇ.ଏ.ଏସ୍ ଚାକିରି ପଛରେ ଧାବମାନ। କିନ୍ତୁ ଏଥିରୁ ବାଦ୍ ପଡ଼ନ୍ତି ବିଜନ ସେନାପତି । ଇଞ୍ଜିନିୟରିଂ ପାସ୍ କରିବା ପରେ ଜୁନିୟର ଇଞ୍ଜିନିୟର ଭାବେ ଚାକିରିରେ ଯୋଗ ଦିଅନ୍ତି। ଆଇ.ଏ.ଏସ୍ ଅଫିସର ସିଦ୍ଧାର୍ଥଙ୍କ ଅନୁଜା ସୀମା ସହିତ ତାଙ୍କର ବିବାହ ହୁଏ । ସିଦ୍ଧାର୍ଥ ସୀମାକୁ ଅତି ସ୍ନେହ କରୁଥିଲେ ମଧ୍ୟ ଭାରତର ସର୍ବୋଚ୍ଚ ଚାକିରି ଆଇ.ଏ.ଏସ୍ ପଦବୀର ମୋହରେ ସେ ତାଙ୍କର ଜୁନିଅର ଇଞ୍ଜିନିୟର ଭିଣୋଇଙ୍କୁ ହୀନ ଦୃଷ୍ଟିରେ ଦେଖନ୍ତି । ବିଜନ ଭାରତ ଛାଡ଼ି ଆମେରିକାରେ ଏକ ପ୍ରଖ୍ୟାତ କମ୍ପାନିରେ ଯୋଗଦିଅନ୍ତି । ଆମେରିକାର ରହଣିକାଳ ମଧ୍ୟରେ ପ୍ରଥମ ଥର ପାଇଁ ପତ୍ନୀ ଓ ପୁତ୍ର ସହିତ ସେ ଭାରତକୁ ବୁଲି ଆସିଛନ୍ତି । ସିଦ୍ଧାର୍ଥ ସେମାନଙ୍କୁ ଭୁବନେଶ୍ୱର ସହରର କେତୋଟି ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇଛନ୍ତି । ରାଜ୍ୟ ପ୍ରତ୍ନତାତ୍ତ୍ୱିକ ସଂଗ୍ରହାଳୟର ପୁରାତନ ପ୍ରସ୍ତର ପ୍ରତିମାଗୁଡ଼ିକୁ ସିଦ୍ଧାର୍ଥ ତାଙ୍କ ଭଣଜାକୁ ମୃତ ଦେବତା ବୋଲି ଚିହ୍ନାଇ ଦେଇଛନ୍ତି। ମାତ୍ର ପାଞ୍ଚବର୍ଷର ଭଣଜା ଏଥିରେ ବିଶ୍ୱାସ ନ କରି ବିସ୍ମୟ ପ୍ରକାଶ କରିଛି । ମିସ୍କୁନ୍‌ର ବିସ୍ମୟାବିଷ୍ଟ ଭାବକୁ ଲକ୍ଷ୍ୟକରି ବିଜନ ତାଙ୍କ ଶାଳକ ଉଦ୍ଦେଶ୍ୟରେ କହିଛନ୍ତି– "ସେ ଦେଶରେ ଈଶ୍ୱର ଅବିଶ୍ୱାସୀ ଲୋକ ବହୁତ। କିନ୍ତୁ ଈଶ୍ୱର ମରିଗଲେଣି କହିଲେ ଲୋକେ ତମକୁ ଭାବିବେ କମ୍ୟୁନିଷ୍ଟ। ପିଲାଟା ବୋଧେ ତା' ମାମୁଁକୁ କମ୍ୟୁନିଷ୍ଟ ବୋଲି ସନ୍ଦେହ କରି ଚମକୁଚି ନା କ'ଣ! ହାଃ, ହାଃ ।"[୧]

ଆମେରିକାର ଲୋକମାନେ ଐଶ୍ୱରିକ ଫଳ ଉପରେ ବିଶ୍ୱାସ କରୁ ନ ଥିଲେ ମଧ୍ୟ ଈଶ୍ୱରଙ୍କ ସ୍ଥିତି ନେଇ ଦୃଢ଼ନିଶ୍ଚିତ । ଜଡ଼ବାଦୀ ଆମେରିକାବାସୀ ଆସ୍ତିକ ହୋଇଥିବାବେଳେ ଦେବଭୂମି ଭାରତର ଜନତା ଆଜି ନାସ୍ତିକ ହୋଇପଡ଼ୁଛନ୍ତି । ଭାରତର ଅନ୍ତରାତ୍ମା ପ୍ରଯୁକ୍ତ ବିଗ୍ରହଗୁଡ଼ିକ ଦୁରାଚାରୀ ସ୍ୱଦେଶୀଙ୍କ ଦ୍ୱାରା ଅବହେଳିତ ହେଉଛି । ମିସ୍କୁନ୍‌କୁ ବିଜନ ମୂର୍ତ୍ତିଗୁଡ଼ିକର ନିର୍ମାଣ କାଳ ସମ୍ବନ୍ଧରେ ଧାରଣା ଦେଉଥିବା ସମୟରେ ସିଦ୍ଧାର୍ଥ ତାକୁ ବୁଝାଇଛନ୍ତି ମହାକାଳ ଗଡ୍ ଭୟଙ୍କର, ସମସ୍ତଙ୍କୁ ମାରି ଖାଇଯାଆନ୍ତି । ଭାରତୀୟ ନାରୀ ମଧ୍ୟ ସ୍ୱଦେଶୀ ସଂସ୍କୃତି ଓ ବିଶ୍ୱାସ ପ୍ରତି ବିରୋଧାଭାସ ବ୍ୟକ୍ତ କରିଛି । ସୀମା ଭାରତୀୟ ମୂର୍ତ୍ତିଗୁଡ଼ିକୁ ଆମେରିକାକୁ ବିକ୍ରିକରି ପ୍ରଚୁର ଅର୍ଥ ଉପାର୍ଜନ ନିମନ୍ତେ ନିଜର ଭାଇଙ୍କୁ ପ୍ରସ୍ତାବ ଦେଇଛି । ସିଦ୍ଧାର୍ଥ ଭଉଣୀର କଥାକୁ

ସମର୍ଥନ କରି କହନ୍ତି– "ଏ ଡେଡ୍ ଗଡ୍‌ମାନଙ୍କୁ ଏ ଦେଶରୁ ନ ହଟେଇବା ଯାକେ ଏ ଦେଶରୁ ପଭର୍ଟି ଯିବନାହିଁ । କି ଫୁଲିସ୍‌ନେସ୍ ! କୋଟି କୋଟି ଟଙ୍କାର ସମ୍ପତ୍ତି ଏଇ ପଥରଗୁଡ଼ାକ ଦେହରେ ଭର୍ତ୍ତି ହେଇଚି– ଅଥଚ ଆମେ ଦରିଦ୍ର ।"[୨]

ଭାରତୀୟମାନଙ୍କର ଆତ୍ମା ଈଶ୍ୱରସର୍ବସ୍ୱ । ଭାରତୀୟ ବିଶ୍ୱାସ, ସଭ୍ୟତା, ସଂସ୍କୃତିର ମୂଳ ଉତ୍ସ ହେଉଛନ୍ତି ପରମେଶ୍ୱର । ଯାହାର ଏକ ଜ୍ୱଳନ୍ତ ପ୍ରମାଣ ଦିଏ ଭାରତର କାରୁକାର୍ଯ୍ୟମୟ ଦେବମନ୍ଦିର ଓ ବିଗ୍ରହ । ଯେଉଁ ବିଗ୍ରହରେ ଭରିରହିଛି ଭାରତୀୟ ଆତ୍ମାର ପ୍ରତିଟି ଉଚ୍ଛ୍ୱାସ । ଆତ୍ମାବିନା ପିଣ୍ଡର କଳ୍ପନା ନିରର୍ଥକ । ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ଦେଶର ସଭ୍ୟତା ଓ ସଂସ୍କୃତିର ମୂକସାକ୍ଷୀ ତଥା ଭାରତୀୟ ଆତ୍ମାର ସ୍ୱରୂପ ବିଗ୍ରହଗୁଡ଼ିକୁ ବିଦେଶୀ ହାତରେ ଟେକିଦେବା କେତେଦୂର ଯଥାର୍ଥ ? ଗଛର ଚେର କାଟି ତାକୁ ବଞ୍ଚାଇବାର ବୃଥା କଳ୍ପନା ସହିତ ଏହା ସମାନ ନୁହେଁ କି ! ଏଭଳି ହୀନ ପ୍ରୟାସ କରନ୍ତି ସିଦ୍ଧାର୍ଥ ପରି ଅଫିସର । ଯିଏକି ପରମ୍ପରା ବା ବିଶ୍ୱାସ ପ୍ରତି ହିଁ ଅଯଥା ଦୋଷାରୋପ କରନ୍ତି ।

ପବିତ୍ର ଭାରତ ଭୂମିରେ ମୂଢ଼ମତିଙ୍କର ମୋହଭଙ୍ଗ ନିମନ୍ତେ ଈଶ୍ୱରଙ୍କର ଲୀଳାଖେଳା ଯୁଗେ ଯୁଗେ ଦେଖିବାକୁ ମିଳେ । ନିଷ୍ପାପ ଶିଶୁ ମିସ୍କୁନ୍‌ର କୋମଳ ହୃଦୟରେ ଐଶ୍ୱରିକ ସତ୍ତାର ଜାଗରଣ ହୋଇଛି । ମ୍ୟୁଜିୟମ୍‌ରୁ ଫେରି ହୋଟେଲ୍‌ରେ ସିଦ୍ଧାର୍ଥ ତାଙ୍କ ଭଉଣୀ, ଭିଣୋଇ ବନ୍ଧୁ ଗହଣରେ ଆଳାପରତ ଥିବା ସମୟରେ ମିସ୍କୁନ୍ ଉଭାନ୍ ହୋଇଯାଇଛି । ଅତୀତରେ ଆମେରିକାର ମାର୍କଟ୍ୱେନ୍‌ଙ୍କ ମ୍ୟୁଜିୟମ୍‌ରେ ତା'ର ଏଭଳି ଏକ ଅନ୍ତର୍ଦ୍ଧାନ ଘଟଣାକୁ ସ୍ମରଣ କରି ସମସ୍ତେ ରାଜ୍ୟ ପ୍ରତ୍ନତତ୍ତ୍ୱ ସଂଗ୍ରହାଳୟକୁ ଫେରିଯାଇଛନ୍ତି । କିଛିକ୍ଷଣ ପୂର୍ବରୁ ସୀମା ମୁଖରୁ ମୂର୍ତ୍ତିଗୁଡ଼ିକ ବିକ୍ରି କରିଦେବାର ଯେଉଁ ନିର୍ଲଜ ସ୍ୱର ବାହାରୁଥିଲା ତାହା ବଦଳରେ ତା' ଅସହାୟ ଚିତ୍ତରୁ 'ଭଗବାନ' ଶବ୍ଦ ଉଚ୍ଚାରଣ ହୋଇଛି । ବୁଦ୍ଧମୂର୍ତ୍ତିର ପଶ୍ଚାଦ୍ ପଟରେ ପଦ୍ମାସନ ବଦ୍ଧ ଓ ଧ୍ୟାନମଗ୍ନ ମିସ୍କୁନ୍ ତା' ମାଆର ଡାକରେ ଜବାବ ଦେଇଛି । ସିଦ୍ଧାର୍ଥ ଭଣଜାକୁ କୋଳାଗ୍ରତ କରିନେବାକୁ ହସ୍ତ ପ୍ରସାରଣ କରିବାରୁ ସେ ତାଙ୍କୁ ଏଡ଼ାଇ ଯାଇ କହିଛି– "ଆଇ ଆମ୍ ନଟ୍ ଏ ଡେଡ୍ ଗଡ୍ । ନୋ ୟୁ କାନ୍‌ଟ ସେଲ ମି– ୟୁ କାନ୍‌ଟ ସେଲ୍ ମି ।"[୩]

ଶିଶୁ ମିସ୍ତୁନ୍ ପରି ଭାରତୀୟ ଦେବତା ଜୀବନ୍ତ ଓ ନିଷ୍କଳୁଷ । ଏହା କେବଳ ଭାରତର ଭବିଷ୍ୟତ ନୁହେଁ ସମଗ୍ର ପୃଥିବୀର ମଧ୍ୟ ପଥପ୍ରଦର୍ଶକ । ଯାହାର ଏକ ପ୍ରତ୍ୟକ୍ଷ ପ୍ରମାଣ ବୁଦ୍ଧଦେବ । ମିସ୍ତୁନ୍ ମୃତ ଦେବତା ହୋଇ ନ ଥିବାରୁ ତାକୁ ତା'ର ମାମୁ ବିକ୍ରି କରିପାରିବେ ନାହିଁ ବୋଲି ଗାଳ୍ପିକ ଦୃଢ଼ ବିଦ୍ରୂପୋକ୍ତି ମାଧ୍ୟମରେ ପ୍ରକାଶ କରିଛନ୍ତି । ମିସ୍ତୁନ୍ ଠାରେ ଯେଉଁ ଚେତନା ଦେଖିବାକୁ ମିଳିଛି ତାହା କୌଣସି ସାଧାରଣ ଶିଶୁ କ୍ଷେତ୍ରରେ ଅସମ୍ଭବ ହେଲେ ମଧ୍ୟ ଗଳ୍ପକୁ ଶିକ୍ଷଣୀୟ ଓ ସରସ ସୁନ୍ଦର କରିବାରେ ଏହା ସମ୍ଭବ ହୋଇଛି ।

## ପିତୃଋଣ

ବ୍ୟକ୍ତିର ଦୋଷ ରକ୍ତଗତ ବା ବଂଶଗତ ନୁହେଁ, ବରଂ ସ୍ୱ ଉପାର୍ଜିତ । କୌଣସି ଦୋଷୀର ସ୍ତ୍ରୀ,ପୁତ୍ର,କନ୍ୟା ଉତ୍ତରାଧିକାରୀବଶତଃ ଦୋଷୀ ହୋଇ ନ ପାରନ୍ତି । ହିରଣ୍ୟକଶିପୁର ପୁତ୍ର ଭକ୍ତ ପ୍ରହଲ୍ଲାଦ ଅବା ରାବଣ ବଂଶରେ ବିଭୀଷଣ ଭଳି ଦେବପ୍ରତିମ ବ୍ୟକ୍ତିର ଆବିର୍ଭାବ ଯେପରି ସମ୍ଭବ ଉଦ୍ଧତ ଉତ୍ପୀଡ଼କ ମନୁଷ୍ୟଠାରୁ ଉଦାର ହୃଦୟବାନ୍ ସନ୍ତାନ ଜନ୍ମ ହେବା କିଛି ଅସମ୍ଭବ ନୁହେଁ । 'ପିତୃଋଣ' ଗଳ୍ପ ଏହାର ଏକ ଜ୍ୱଳନ୍ତ ନିଦର୍ଶନ ।

ଘଡ଼ିମୂଳ ଗ୍ରାମର ପ୍ରତାପଶାଳୀ ବ୍ୟକ୍ତି କ୍ଷୀର ସାଆଁତରା । ତା'ର ଉତ୍ପାତ ଯୋଗୁଁ ଗ୍ରାମ ତ୍ରାହି ତ୍ରାହି ଡାକେ । ଲୋକମାନେ ତାକୁ ଭୟ କଲେ ମଧ୍ୟ ସମ୍ମାନ ଦେଖାନ୍ତି । କାରଣ ସେ ଲୁଚାଇ ଚୋରାଇ କିଛି କରେ ନାହିଁ । ଯାହା କିଛି କରେ ସାମ୍ନାସାମ୍ନି । କିନ୍ତୁ କ୍ଷୀର ସାଆଁତରା ମଲାବେଳକୁ ଲୋକମାନେ ତାଙ୍କର ସ୍ୱର ବଦଳାଇ ଦିଅନ୍ତି । ତାକୁ ଚୋର ଖଣ୍ଟ କହନ୍ତି ଏବଂ ତା'ର ମୃତ୍ୟୁ ନିମନ୍ତେ ଗ୍ରାମଦେବତୀଙ୍କୁ ମୁଣ୍ଡିଆ ମାରନ୍ତି । ଏମିତିକି ତା'ର ଶବ ସତ୍କାର କରିବାକୁ ସାଇଲୋକ ଆସନ୍ତି ନାହିଁ । କ୍ଷୀର ମୃତ୍ୟୁ ବେଳକୁ ତା' ସଂସାରରେ ସ୍ତ୍ରୀ ଓ ନ' ବର୍ଷର ପୁତ୍ର ବୀର ବ୍ୟତୀତ ଆଉ କେହି ନ ଥା'ନ୍ତି । ପିତାର ଶୁଦ୍ଧିକ୍ରିୟା ପରେ ବୀର ହୁଏ ନିଃସ୍ୱ । ପାଠ ପଢ଼ାରେ ଡୋରିବାନ୍ଧି ମୂଲ କାମ କରେ ଏବଂ ବିଧବା ମା' ପରଘରେ ଧାନକୁଟି ଜୀବିକା ନିର୍ବାହ କରେ । ବୀର ତା' ବାପା ଭଳି ହୁଣ୍ଡା କି ଗୁଣ୍ଡା ନୁହେଁ ।

ସେ ଏକଦମ୍ ସାଦାସିଧା । ବାପର ପାପ କର୍ମ ପାଇଁ ଗ୍ରାମବାସୀମାନେ ତାକୁ ଏପରିକି ତା'ର ମାଆକୁ ମଧ୍ୟ ପ୍ରାୟଶ୍ଚିତ କରାଇଛନ୍ତି ।

କ୍ଷୀର ପାଆଁତରା ଗ୍ରାମର ଝିଅ,ବୋହୂମାନଙ୍କୁ ଯେଉଁଭଳି ହଲାପଟା କରୁଥିଲା ଗ୍ରାମବାସୀମାନେ ପ୍ରତିଶୋଧପରାୟଣ ହୋଇ ମିଥ୍ୟା ଚୋରି ଘଟଣାରେ ଅଭିଯୁକ୍ତ କରି ବୀର ମା'କୁ ବେଜିତି କରିଛନ୍ତି । ଏହି ଲଜ୍ଜାକର ଘଟଣା ଯୋଗୁଁ ବୀର ମା' କିଛିଦିନ ମଧ୍ୟରେ ଇହଧାମ ତ୍ୟାଗ କରିଛି । ଏହାପରେ ଆରମ୍ଭ ହୁଏ ବୀର ପ୍ରତି ନିର୍ମମ ଅତ୍ୟାଚାର । ଶେଷରେ ଗ୍ରାମବାସୀମାନେ ସୁଭଦ୍ରା ନାମ୍ନୀ ପଚିଶ ବର୍ଷ ବୟସ୍କା ବାଳୁତ ବିଧବା ବ୍ରାହ୍ମଣ କନ୍ୟାର ପାପଗର୍ଭ ପାଇଁ ନିର୍ଦ୍ଦୋଷ ଊଣେଇଶି ବର୍ଷ ବୟସ୍କ ବୀରକୁ ଦାୟୀ କରି କରାଳ ବନ୍ୟା ପ୍ଲାବିତ ନଦୀ ଗର୍ଭକୁ ତାକୁ ଫିଙ୍ଗି ଦେଇଛନ୍ତି ଏବଂ ତା'ର ପିତୃଋଣ ସବୁ ଧୋଇପୋଛି ନିର୍ମଳ କରିଦେଇଛନ୍ତି । ନଦୀ ତାକୁ କୋଳେଇ ନେଇ ନାହିଁ, ବରଂ ପାପୀମାନଙ୍କ ତ୍ରାଣକର୍ତ୍ତା ରୂପେ ଏକ ନୂତନ ଜୀବନର ସନ୍ଦେଶ ଦେଇ ବୀରକୁ ଫେରାଇ ଦେଇଛି । ସୁଭଦ୍ରା ଦ୍ୱାରା ନଦୀରୁ ଉଦ୍ଧାର ପାଇ ସେ କଲିକତା ଯାଇଛି ଏବଂ ଘଟଣାକ୍ରମେ କଲିକତାର ବିଶିଷ୍ଟ ଧନଶାଳୀ ରୂପେ ପରିଚିତ ହୋଇଛି । ବୀର ଧନଲୋଭରେ ଅନ୍ଧ ହୋଇ ଜନ୍ମମାଟିକୁ ଭୁଲିଯାଇ ନାହିଁ କିମ୍ବା ଗ୍ରାମବାସୀମାନଙ୍କ ପ୍ରତି ପ୍ରତିକ୍ରିୟାଶୀଳ ହୋଇନାହିଁ । ସେ ପାପୀମାନଙ୍କ ଉଦ୍ଧାରାର୍ଥେ ନିଜର ସମସ୍ତ ସମ୍ପତ୍ତି ଦାନ କରିବାକୁ ନିଷ୍ପତ୍ତି ନେଇଛି ଏବଂ ନିଜ ରାଜ୍ୟ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ମୋଟାଅଙ୍କର ଚେକ୍ ପଠାଇଛି । ଗଳ୍ପରେ ଗ୍ରାମୀଣ ଜନତାଙ୍କ ପ୍ରତିହିଂସା ବୀରର ଉଦାର ମାନବିକତା ନିକଟରେ ନିସ୍ତବ୍ଧ ହୋଇପଡ଼ିଛି ।

### ବୃକ୍ଷସାକ୍ଷୀ

ଆଧୁନିକ ମାନବ ବିଜ୍ଞାନ ବଳରେ ଅସାଧ୍ୟକୁ ସାଧ୍ୟ କରୁଛି ଓ ଯୁକ୍ତିବାଦୀର ମନ ନେଇ ସେ ସବୁକିଛିର ପରୀକ୍ଷା କରୁଛି । ପ୍ରାଚୀନ ପରମ୍ପରା ଓ ବିଶ୍ୱାସକୁ ଖାତିର୍ ନ କରି ଜଡ଼ବାଦୀ ବିଜ୍ଞାନର ସ୍ତୁତିଗାନ କରୁଛି । ବିଜ୍ଞାନ ଯେ ବେଳେବେଳେ ମଣିଷର ବିଶ୍ୱାସ ନିକଟରେ ହାର୍‌ମାନେ ତାହାର ନମୁନା 'ବୃକ୍ଷସାକ୍ଷୀ' ଗଳ୍ପ ।

ପ୍ରତିଦିନ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ କଣ୍ଟାପଡ଼ା ଗାଁ ମୁଣ୍ଡର ଖଜୁରି ଗଛଟା ମାଇପିଟିଏ ଓଳଗି ହେଲାଭଳି ବଙ୍କେଇ ଆସେ ଭୂଇଁ ଉପରକୁ ଏବଂ ତା' ପତ୍ରଗୁଡ଼ାକ ଝାମ୍ପୁରୀ ବାଳ ପରି ଓହଳି ପଡ଼େ ମାଟି ଉପରେ । କଣ୍ଟାପଡ଼ା ଗ୍ରାମବାସୀଙ୍କ ବିଶ୍ୱାସରେ ଖଜୁରି ଗଛକୁ ସବାର ହୁଏ ଅଲେଖ ସାହୁ ଝିଅ ପେମିର ଭୂତ । ପେମି ହେଉଛି ସେହି ଗ୍ରାମର ଝିଅ ଆଉ ବୋହୂ । ସନ୍ତାନହରା ଓ ସ୍ୱାମୀ ପରିତ୍ୟକ୍ତା ପେମିର ପୁନର୍ବିବାହ ଗ୍ରାମର ଖଳଲୋକଙ୍କ ଯୋଗୁଁ ହୋଇପାରିନି ।

ଗ୍ରାମର ସରପଞ୍ଚ ଚନ୍ଦ୍ରମଣିର ପ୍ରରୋଚନାରେ ପେମି ଅନ୍ୟ ସ୍ତ୍ରୀଲୋକମାନଙ୍କ ସହିତ କଲିକତାର ନାରୀ ସମ୍ମିଳନୀରେ ଯୋଗଦେବା ପାଇଁ ଯାଇଛି । ସେଠାରେ ସେ ନିଖୋଜ ହୋଇଛି । ପେମି ଗଙ୍ଗାନଦୀକୁ ଡେଇଁପଡ଼ି ପ୍ରାଣ ବିସର୍ଜନ କରିଛି ବୋଲି କଣ୍ଟାପଡ଼ାରେ ନିଶାପ ହୋଇ ସ୍ଥିର ହୋଇଛି । ଏ ଘଟଣାର ପାଞ୍ଚବର୍ଷ ପରେ ଗାଁ ମୁଣ୍ଡର ଖଜୁରି ଗଛକୁ ପେମିର ଭୂତ ଲାଗିଛି । ଖଜୁରି ଗଛର ଅଦ୍ଭୁତ ଭଙ୍ଗୀ ଦେଖି ଖବରକାଗଜରେ ଏ ବିଷୟ ପ୍ରକାଶ ପାଇଛି ଏବଂ ବୈଜ୍ଞାନିକ, ସାମ୍ବାଦିକ, ଗୁଣିଆ, ବାବାଜି ଆଦି କଣ୍ଟାପଡ଼ା ଗ୍ରାମକୁ ଧାଡ଼ି ଲଗାଇଛନ୍ତି । ଖବର ପାଇ ଚନ୍ଦ୍ରମଣି ଭୁବନେଶ୍ୱରରୁ ଧାଇଁ ଆସିଛି ନିଜ ଗାଁକୁ । ଇତିମଧ୍ୟରେ ଚନ୍ଦ୍ରମଣି ହୋଇଛି ବଡ଼ ନେତା । ଗାଁ ଛାଡ଼ି ଭୁବନେଶ୍ୱରର ବଡ଼ କୋଠାରେ ସେ ଅଫିସ୍ କରିଛି । ଖଜୁରି ଗଛକୁ ଦେଖି ଚନ୍ଦ୍ରମଣିଙ୍କୁ ଲାଗିଛି ପେମିର ଭୂତ ଏବଂ ସେ ବକିଚାଲେ ଦୁର୍ବୋଧ ଭାଷା । ତା'ର ସେହି ଦୁର୍ଜ୍ଞେୟ ଭାଷାକୁ ଭାଷାବିଜ୍ଞାନ ଗବେଷଣାଗାରରେ ପରୀକ୍ଷା କରାଯାଇ ସମ୍ବାଦପତ୍ରରେ ପ୍ରକାଶ ପାଇଛି– "ବୈଜ୍ଞାନିକଙ୍କ ଭୂତ ବିଶ୍ୱାସ– ବୈଜ୍ଞାନିକମାନେ ଭୂତପ୍ରେତରେ ବିଶ୍ୱାସ କରନ୍ତି ନାହିଁ– ଏହା ଜଣାଶୁଣା । କିନ୍ତୁ ଅଧୁନା ଏମିତି କେତେଟା ଅବାସ୍ତବ ଘଟଣା ସାରାବିଶ୍ୱରେ ଘଟିବାର ପ୍ରମାଣ ମିଳୁଛି, ଯେଉଁଥିରୁ ଭୂତ ପ୍ରତି ବୈଜ୍ଞାନିକମାନଙ୍କ ଅବିଶ୍ୱାସ କ୍ରମଶଃ ତୁଟିବାରେ ଲାଗିଛି ।"[୪]

ପେମିର ବିଭାଘର ଭାଙ୍ଗିବା ଓ ତାକୁ କଲିକତାର ହାଡ଼କଟା ଗଳିରେ ଛାଡ଼ିଦେଇ ତା' ଆତ୍ମହତ୍ୟା ଘୋଷଣା କରିବାରେ ଚନ୍ଦ୍ରମଣି ସଂପୃକ୍ତ ବୋଲି ପେମିର ଭୂତ ପ୍ରକାଶ କରିଛି । ଗୋଟିଏ ମୁସଲମାନ ସୌଦାଗର ସହିତ ପେମି ହାଡ଼କଟା

ଗଳିରୁ ଉଦ୍ଧାର ପାଇ ଆରବ ଯାଇଛି ଏବଂ ତା'ର ବେଗମ୍ ବନି ରହିଛି । କିନ୍ତୁ କିଛିଦିନ ତଳେ ବୋମା ବିସ୍ଫୋରଣରେ ପେମି ତା'ର ମୁସଲମାନ ସ୍ୱାମୀ ସହିତ ମୃତ୍ୟୁବରଣ କରିଛି । ଗ୍ରାମର ଝିଅ ବୋହୂମାନଙ୍କୁ ଘର କଣରେ ନ ରଖି ସ୍ୱାଧୀନତା ଦେବାକୁ ପେମିର ଭୂତ ଗ୍ରାମବାସୀମାନଙ୍କୁ ସୂଚାଇ ଦେଇଛି ।

ଗାଳ୍ପିକ ଭୂତପ୍ରେତର ଫାଣ୍ଟାସି ସୃଷ୍ଟିକରି ତାହାରି ମାଧ୍ୟମରେ ସାଂପ୍ରତିକ ରାଜନୈତିକ ମୂଲବୋଧର ଅବକ୍ଷୟ ଓ ନାରୀ ସ୍ୱାଧୀନତାର ଦୃଢ଼ ସ୍ୱର ଉତ୍ତୋଳନ କରିଛନ୍ତି । ପ୍ରାଚୀନ ପରମ୍ପରା, ବିଶ୍ୱାସ୍ ସହିତ ପ୍ରଗତିବାଦର ଅପୂର୍ବ ସମନ୍ୱୟ ଦେଖିବାକୁ ମିଳେ ଏହି ଗଳ୍ପରେ ।

## ଗ୍ଲାସ୍‌ନଷ୍ଟ୍

ସମୟର ପରିବର୍ତ୍ତନରେ କମ୍ୟୁନିଜିମ୍ ଭିନ୍ନମୋଡ଼ ନେଇଛି ଋଷ୍‌ରେ । ଗ୍ଲାସନଷ୍ଟ୍, ପେରିସ୍ତ୍ରୋଇକା ଶାସନ ଚାଲିଛି ସେଠାରେ । ଦୁର୍ନୀତିମୁକ୍ତ ପ୍ରଶାସନିକ ଶାସନ ସଂସ୍କାର ହେଉଛି ଗ୍ଲାସ୍‌ନଷ୍ଟ୍‌ର ଆଭିମୁଖ୍ୟ । ନିର୍ମଳ ପ୍ରଶାସନ ଦେଶର ପ୍ରଗତିରେ ସହାୟକ ହୁଏ । ଏହା କେବଳ କମ୍ୟୁନିଷ୍ଟ ଶାସିତ ଋଷ୍‌ରେ ନୁହେଁ, ଭାରତ ଭଳି ଅନୁନ୍ନତ ଓ କଳୁଷିତ ଗଣତାନ୍ତ୍ରିକ ରାଷ୍ଟ୍ରରେ ମଧ୍ୟ ଏକାନ୍ତ ଆବଶ୍ୟକ । ଭାରତ ଭୂମିରେ ଦୁର୍ନୀତିଗ୍ରସ୍ତ ଉଚ୍ଚପଦସ୍ଥ ପ୍ରଶାସନିକ ଅଧିକାରୀ ଓ ରାଜନୈତିକ ନେତାଙ୍କ ହେତୁ ଏହା କିପରି ଉପହସିତ ହୋଇଛି ତାହା 'ଗ୍ଲାସ୍‌ନଷ୍ଟ୍' ଗଳ୍ପରେ ବର୍ଣ୍ଣିତ ।

ଗଳ୍ପ ନାୟକ ଅର୍ଦ୍ଧେନ୍ଦୁ ଆବାଲ୍ୟରୁ ଥିଲା ପଦ୍ମପ୍ରେମୀ । ପରବର୍ତ୍ତୀ ସମୟରେ ଉଗ୍ର କମ୍ୟୁନିଜିମର ପ୍ରଭାବରେ ସେ ପଦ୍ମ ପରିବର୍ତ୍ତେ ରକ୍ତାକ୍ତ ବିପ୍ଳବର ସ୍ୱପ୍ନ ଦେଖିଛି । କେବଳ ଭାରତୀୟ ସଂସ୍କୃତିର ପ୍ରତୀକ ପଦ୍ମ ନୁହେଁ, ସ୍ୱଦେଶର ସନ୍ନ୍ୟାସ ପରମ୍ପରା ପ୍ରତି ସେ ମଧ୍ୟ ବୀତସ୍ପୃହ ହୋଇପଡ଼ିଛି । ଏପରିକି ତା' ମାନସପଟରେ ଭାରତର ଆତ୍ମିକ ପୁରୁଷ ବିଶ୍ୱବିଜୟୀ ବିବେକାନନ୍ଦ ମଧ୍ୟ ଭଣ୍ଡ,ଶଠ,ବାବାଜିର ରୂପ ପରିଗ୍ରହଣ କରିଛନ୍ତି । ଭାରତର ସନ୍ନ୍ୟାସ ପରମ୍ପରା ପ୍ରତି ଥିବା ତା'ର ଘୃଣ୍ୟ ମନୋଭାବ ସଂପର୍କରେ ଗାଳ୍ପିକ କହନ୍ତି– "ସେ ତା' ଛାତ୍ର ଜୀବନରେ ସମଗ୍ର ଭାରତୀୟ ସନ୍ନ୍ୟାସ ପରମ୍ପରାକୁ କଠୋର ସମାଲୋଚନା ସହିତ ନିନ୍ଦା କରୁ ନ ଥିଲା

କେବଳ, ବ୍ଲାସଫେମି ମଧ କରିଆସୁଥିଲା ।"[୫] କିନ୍ତୁ ଅର୍ଦ୍ଧେନ୍ଦୁ ଆଇ.ଏ.ଏସ୍ ଚାକିରି ପାଇ ଆଦିବାସୀ ଅଞ୍ଚଳରେ ପ୍ରଥମେ ନିଯୁକ୍ତି ହୋଇଥିବା ସମୟରେ ତା'ର ଭାରତୀୟ ସଂସ୍କୃତି ବିରାଗୀ ଚିନ୍ତାଧାରା ଦୂର ହୋଇଛି । ଅର୍ଦ୍ଧେନ୍ଦୁ ଦ୍ୱାରା ପରିତ୍ୟକ୍ତ ପଦ୍ମଗୁଚ୍ଛଟି ପାଇଁ ସେଠାକାର ଅର୍ଦ୍ଧଭୁକ୍ ଉଲଗ୍ନ ଶଙ୍କରୁଣୀଙ୍କ କଳି ଘଟଣାଟି ଭାରତୀୟ ସଂସ୍କୃତି ପ୍ରତି ଥିବା ତା'ର ଅନାସ୍ଥା ଭାବକୁ ଦୂରେଇ ଦେଇଛି ।

କ୍ଷୁଧିତ, ନିରକ୍ଷର, ସରଳ ଆଦିବାସୀ ଭାରତର ସଂସ୍କୃତିକୁ ବଜାୟ ରଖିଥିବା ବେଳେ ସଭ୍ୟ ଶିକ୍ଷିତ ବୋଲାଉଥିବା ଭାରତର କେତେକ ରାଜନୈତିକ ନେତା ଓ ଉଚ୍ଚତମ ପ୍ରଶାସନିକ ଅଧିକାରୀ ଗଣତନ୍ତ୍ରର ଦୁହାଇ ଦେଇ ସେମାନଙ୍କୁ ଶୋଷଣ, ପ୍ରତାରଣା କରନ୍ତି । ସରକାରୀ କାଗଜପତ୍ରରେ ସେମାନଙ୍କ ପ୍ରଗତି ପାଇଁ କୁମ୍ଭୀର କାନ୍ଦଣା କାନ୍ଦନ୍ତି । ଏଥିରୁ ବାଦ୍ ପଡ଼ିଛନ୍ତି ଅର୍ଦ୍ଧେନ୍ଦୁ । ଋଷିଆରେ ପ୍ରଚଳିତ ଗ୍ଲାସ୍‌ନଷ୍ଟର ଅନୁକରଣରେ ଦୁର୍ନୀତିଗ୍ରସ୍ତ ଭାରତୀୟ ପ୍ରଶାସନିକ କ୍ଷେତ୍ରରେ ସଂସ୍କାର ଆଣିବାକୁ ସେ ପ୍ରୟାସ କରିଛନ୍ତି । ଯାହା ଫଳରେ ଆଦିବାସୀ ଅଧ୍ୟୁଷିତ କଳାହାଣ୍ଡି ଅଞ୍ଚଳରୁ ଦୁର୍ଭିକ୍ଷ ନିରାକରଣ ନିମନ୍ତେ ପ୍ରଧାନମନ୍ତ୍ରୀଙ୍କ ପରିଦର୍ଶନର ଫଳାଫଳକୁ ନେଇ ପ୍ରସ୍ତୁତ ମିଥ୍ୟା ଫାଇଲ୍‌କୁ ସେ ଉଚ୍ଚସ୍ତରୀୟ ପ୍ରଶାସକମାନଙ୍କ ମିଟିଂରେ ତୀବ୍ର ବିରୋଧ କରିଛନ୍ତି । କିନ୍ତୁ ତାଙ୍କର ଏ ପ୍ରକାର ପଦକ୍ଷେପ ରାଜନୈତିକ ନେତା ଓ ଅନ୍ୟ ପ୍ରଶାସକମାନଙ୍କ ଗାତ୍ରଦାହର କାରଣ ହୋଇଛି । ଏପରିକି ଉପରିସ୍ଥ ଅଫିସର ପୂର୍ଣ୍ଣେନ୍ଦୁ ଏଇଟା ବ୍ଲଡି ରିଭଲ୍ୟୁସନ ଯୁଗ ନୁହେଁ ବୋଲି ବିଦ୍ରୂପୋକ୍ତି ପ୍ରକାଶ କରିବା ସହିତ ଏଇଟା ଯେ ଗ୍ଲାସ୍‌ନଷ୍ଟ ଓ ପେରିସ୍ତ୍ରୋଇକାର ଯୁଗ ଏ କଥା ଜଣାଇ ଦେଇଛନ୍ତି । ଗ୍ଲାସ୍‌ନଷ୍ଟ ଓ ପେରିସ୍ତ୍ରୋଇକା ବିପ୍ଳବ ରହିତ ବୋଲି ଅର୍ଦ୍ଧେନ୍ଦୁ ଗ୍ରହଣ କରି ନ ପାରି ପ୍ରତ୍ୟୁତ୍ତରରେ କହିଛନ୍ତି– "ଗ୍ଲାସ୍‌ନଷ୍ଟ, ପେରିସ୍ତ୍ରୋଇକା ମାନେ ତ ଏଇଆ– ବୁରୋକ୍ରାଟିକ୍ ରିଭଲ୍ୟୁସନ୍! ଯେଉଁମାନେ ଅଫିସ୍ ଭିତରେ ରିଭୋଲଟ୍ କରିବାକୁ ଚାହାଁନ୍ତି, ଗ୍ଲାସ୍‌ନଷ୍ଟ ତ ତାଙ୍କରି ପାଇଁ ସାର୍ !"[୬]

ଅର୍ଦ୍ଧେନ୍ଦୁଙ୍କ ଗ୍ଲାସ୍‌ନଷ୍ଟ ବିପ୍ଳବ ସଫଳ ହୋଇପାରିନାହିଁ । ଚାକିରିରୁ ତାଙ୍କୁ ବରଖାସ୍ତ କରାଯାଇଛି । ଶେଷରେ ସେ ଜନ୍ମମାଟି ପ୍ରତି ଆକୃଷ୍ଟ ହୋଇଛନ୍ତି । ଫେରି

ଆସିଛନ୍ତି ତାଙ୍କର ଚିର ପରିଚିତ ପଦ୍ମପୋଖରୀ ହୁଡ଼ାସ୍ଥିତ ଗାଁ'ର ମାଟିକୁଡ଼ିଆ ଘରକୁ ।

## ଟେଲିଫୋନ୍ କଲ୍-ଇଣ୍ଟରଭ୍ୟୁ ପୂର୍ବଦିନର

ଶିଳ୍ପ ଓ କୃଷିରେ ବିଶେଷ ବିକାଶଲାଭ କରି ନ ଥିବା ରାଷ୍ଟ୍ରରୂପେ ପରିଗଣିତ ଭାରତରେ ଜନବିସ୍ଫୋରଣ ଦ୍ରୁତଗତିରେ ବୃଦ୍ଧି ପାଉଛି । ସାଂପ୍ରତିକ ସମାଜର ସର୍ବାଧିକ ଯୁବକ ହେଉଛନ୍ତି କର୍ମକାତର ଓ ସ୍ୱାର୍ଥାନ୍ଧ । କର୍ମନିଯୁକ୍ତି କ୍ଷେତ୍ରରେ ଦେଖାଦେଇଛି ନାନାବିଧ ସମସ୍ୟା । ସରକାରୀ ଚାକିରି ବ୍ୟତୀତ ଅନ୍ୟ କୌଣସି ବୃତ୍ତିରେ ନିୟୋଜିତ ହେବାପାଇଁ ଭାରତୀୟ ଯୁବସମାଜ ବିଶେଷ ଆଗ୍ରହ ପ୍ରକାଶ କରୁନାହାଁନ୍ତି । କାରଣ ଦୁର୍ନୀତିଗ୍ରସ୍ତ ସରକାରୀ ଚାକିରି ହୋଇଛି ସେମାନଙ୍କ ବୃତ୍ତିର ଏକମାତ୍ର ଧ୍ୟେୟ । ସରକାରୀ ଚାକିରିଟିଏ ପାଇବା ବା କାହାକୁ ଦେବା ପାଇଁ ସାଧାରଣ ଜନତାଠାରୁ ଆରମ୍ଭ କରି କ୍ଷମତାଶାଳୀ ନେତା ପର୍ଯ୍ୟନ୍ତ ସମସ୍ତେ ନାନା ହୀନ ଉଦ୍ୟମ ଜାରି ରଖୁଛନ୍ତି । ବିଶେଷତଃ ରାଜନୈତିକ ନେତା, ଉଚ୍ଚ ସରକାରୀ କର୍ମଚାରୀ, ଧନଶାଳୀ ବ୍ୟକ୍ତି ନୀତିହୀନ ଲବିର ମୁଖ୍ୟ ପୁରୋଧାଃ । ଏଇମାନେ ରାବଣର ଭୂମିକା ଗ୍ରହଣ କରି ଧମକ, ଚମକ, ଲାଞ୍ଚ, ମିଛ, ତେଲମାଲିସ୍ କଥାର ମାୟାରେ ଚାକିରିର ଲକ୍ଷ୍ମଣଗାର ପ୍ରତୀକ ଇଣ୍ଟରଭ୍ୟୁକୁ ଅତିକ୍ରମ କରିବା ନିମନ୍ତେ ସଚ୍ଚୋଟ ଅଫିସରଙ୍କୁ ପ୍ରତାରିତ କରିବାକୁ ସର୍ବଦା ଚେଷ୍ଟା କରନ୍ତି । ଏହିଭଳି ଏକ ଘଟଣାର ନିଛକ ପ୍ରତିଛବି– 'ଟେଲିଫୋନ୍ କଲ୍-ଇଣ୍ଟରଭ୍ୟୁ ପୂର୍ବଦିନର' ଗଳ୍ପ ।

ଗୋଟିଏ ପିଅନ୍ ପୋଷ୍ଟ ପାଇଁ ଇଣ୍ଟରଭ୍ୟୁ ପୂର୍ବଦିନ ସକାଳ ଛ'ରୁ ରାତି ଦଶ ଭିତରେ ପ୍ରାୟତଃ ହଜାର ଏକ ଟେଲିଫୋନ୍ କଲ୍ ଗଳ୍ପ ନାୟକ ନୃପେନ ସାହାଦେଓ ପାଇଛନ୍ତି । ଏସବୁ କଲ୍ ମଧ୍ୟରେ ମନ୍ତ୍ରୀଙ୍କ ପି.ଏ, ସେକ୍ରେଟାରୀଙ୍କ ଷ୍ଟେନୋ ପ୍ରମୁଖ ବ୍ୟକ୍ତିଙ୍କର ଧମକ, ଚମକ, ଲାଞ୍ଚ, ଅତିଶୟୋକ୍ତି ପ୍ରକାଶ ପାଇଛି । ସିଧାସଳଖ ଲାଞ୍ଚ ପ୍ରଦାନ ଓ ଧମକର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ– "ଶୁଣନ୍ତୁ ନୃପେନ୍‌ବାବୁ! ଆପଣ ଜଣେ ପ୍ରିନ୍‌ସିପ୍ଲିଡ୍ ଅଫିସର ଜାଣେ ମୁଁ। କିନ୍ତୁ ଏ କେଶ୍‌ରେ ଆପଣଙ୍କୁ କମ୍ପ୍ରମାଇଜ୍ କରିବାକୁ ପଡ଼ିବ । ଆପଣ ତ ଜାଣନ୍ତି ଭୁବନେଶ୍ୱରରେ ରହିବାକୁ ହେଲେ ଏତେ

ହେଡ୍‌ଷ୍ଟ୍ରଙ୍ଗ୍‌ନେସ୍ ଚଳେନା । ଏଟା ଗିଭ୍ ଆଣ୍ଡ୍ ଟେକ୍‌ର ଯୁଗ । ପ୍ଲିଜ୍ ଅଣ୍ଡରଷ୍ଟାଣ୍ଡ୍ ମାଇଁ ପଏଣ୍ଟ-ଡୋଣ୍ଟ ଟେକ୍ ଆମିସ୍-ହି ଇଜ୍ ରେଡି ଟୁ ଗିଭ୍... ନୋ ନୋ ଏଟାକୁ ବ୍ରାଇବ୍ ଭାବନ୍ତୁ ନାହିଁ... ଇଟ୍‌ସ ଏ ଡକ୍ଟରସ୍ ଫି ଓନ୍‌ଲି... ।"୭

ନୃପେନ୍‌ବାବୁ ଧମକ ଚମକରେ ମୁଣ୍ଡ ନୁଆଁଇ ନାହାନ୍ତି ବା ଲାଞ୍ଚ ଅତିଶୟୋକ୍ତିରେ ତରଳି ଯାଇ ନାହାଁନ୍ତି । ତାଙ୍କ ଘର ପୂଜାରୀ ଟୋକାର ନିଯୁକ୍ତି ପାଇଁ ଧର୍ମପତ୍ନୀଙ୍କ ଅନୁରୋଧକୁ ମଧ୍ୟ ଏଡ଼ାଇ ଯାଇଛନ୍ତି ।

ସେହିଦିନ ଅର୍ଦ୍ଧରାତ୍ରିରେ ବହୁବର୍ଷ ପରେ ସେ ତାଙ୍କ କଲେଜ ସଙ୍ଗିନୀ ରୀତାର ଟେଲିଫୋନ୍ କଲ୍ ପାଇଛନ୍ତି । ବାନ୍ଧବୀର ସମ୍ଭାଷଣରେ ନୃପେନ୍‌ବାବୁଙ୍କର ଦିନତମାମ୍ ବ୍ୟସ୍ତ, ବିବ୍ରତ, କ୍ରୋଧିତ ମନାକାଶରେ ରୋମାନ୍ସର ମଳୟାନୀଳ ପ୍ରବାହିତ ହୋଇଛି । ଟେଲିଫୋନ୍‌କୁ ଚୁମ୍ବନ ଦେଇ ବକ୍ଷରେ ଲଗେଇ ଧରିଛନ୍ତି । ବାନ୍ଧବୀ ରୀତା ସ୍ମୃତି ଓ ସଂପର୍କର ଖିଅ ଧରି ନିଜ ପୁତ୍ର ନିମନ୍ତେ ସେଇ ଏକା ମତଲବ ପେସ୍ କରିଛନ୍ତି । ଯେଉଁ ଟେଲିଫୋନ୍‌କୁ ନୃପେନ୍ କିଛି ସମୟ ପୂର୍ବରୁ ପ୍ରେମାତିଶଯ୍ୟରେ ଛାତିରେ ଜାବୁଡ଼ି ଧରିଥିଲେ ତାହା ବାନ୍ଧବୀର ସ୍ୱାର୍ଥପରତାର ଆଘାତରେ ତଳେ କଚାଡ଼ି ହୋଇପଡ଼ିଛି । ରୀତାଦେବୀଙ୍କର ଅନୁରୋଧ ହୋଇଛି ସଂପୂର୍ଣ୍ଣ ଭିନ୍ନପ୍ରକାରର । ତାଙ୍କ ପୁତ୍ର ଆଇ.ଏ.ଏସ୍‌ରୁ କ୍ଲରିକାଲ୍ ପର୍ଯ୍ୟନ୍ତ କୋଡ଼ିଏଟି ଇଣ୍ଟରଭ୍ୟୁର ସମ୍ମୁଖୀନ ହୋଇଛି । କୌଣସି ଇଣ୍ଟରଭ୍ୟୁରେ ମେରିଟ୍‌କୁ ଦେଖାଯାଉ ନାହିଁ ବୋଲି ସେ ଅସନ୍ତୋଷ ପ୍ରକାଶ କରିଛି । ରୀତା ଦେବୀଙ୍କ ଭାଷାରେ– "ତା'ର ସେଇ ଗୋଟିଏ କମ୍ପ୍ଲେନ୍– ଆଜିର ଇଣ୍ଟରଭ୍ୟୁରେ ମେରିଟ୍‌ର ସ୍ଥାନ ନାହିଁ । କାଲି ଇଣ୍ଟରଭ୍ୟୁରେ କ'ଣ ହେବ ଜାଣେନା ମୁଁ । ଯେତେହେଲେ ମୁଁ ତା'ର ମା'– ଯଦି ପଦଟିଏ କଥାରେ ତା'ର କିଛି ଉପକାର ହୋଇପାରେ– କିଛି ମନେ କରିବ ନାହିଁ ନୃପେନ୍ । ରାତି ଅଧରେ ଏ ବିଚିତ୍ର ଟେଲିଫୋନ୍ କଲ୍ ଯେମିତି ତୁମର ଦାମ୍ପତ୍ୟ ଜୀବନରେ ଆଦୌ ବାଧା ସୃଷ୍ଟି ନ କରେ, ସେତିକି ଭଗବାନଙ୍କୁ ପ୍ରାର୍ଥନା ।"୮

ନିର୍ମଳ ଭାବମୂର୍ତ୍ତିସଂପନ୍ନ ଅଫିସରଙ୍କ ନିକଟରେ ପ୍ରଭାବଶାଳୀ ବ୍ୟକ୍ତି ଓ ସଂପର୍କୀୟମାନଙ୍କ ଆତ୍ମସ୍ୱାର୍ଥଭିତ୍ତିକ ଆବେଦନ ନିବେଦନ ପ୍ରଭାବହୀନ ହେଲେ ଦେଶର ଭବିଷ୍ୟତ ଉଜ୍ଜ୍ୱଳମୟ ହେବ ।

## ଜନଗଣଙ୍କ ମନ ଓ ତାର ଅଧିନାୟକ

ଆଜିର ଯୁଗ ବିଜ୍ଞାପନ ସର୍ବସ୍ୱ ଯୁଗ । ଉଗ୍ରବସ୍ତୁବାଦର ମୋହରେ ସାଂପ୍ରତିକ ବିଜ୍ଞାପନର ରୂପ ଅସଲି ପରିବର୍ତ୍ତେ ନକଲି ହୋଇଛି ଏବଂ ଏହାର ଆଧାର ହୋଇଛି ଚାଟୁକ୍ତି । ସେବା, ଶିକ୍ଷା, ସଂସ୍କୃତି, ବାଣିଜ୍ୟ, ବ୍ୟବସାୟ, ଶିଳ୍ପ, ରାଜନୀତି, ସମାଜ ପ୍ରତ୍ୟେକ କ୍ଷେତ୍ରରେ ଚାଟୁକ୍ତିର ପ୍ରୟୋଗ ଓ ପ୍ରସାର ପରିଲକ୍ଷିତ ହେଉଛି । ଯେଉଁ ଚାଟୁକ୍ତି ଦ୍ୱାରା ଦ୍ୱାପର ଯୁଗର ଶକୁନି କୌରବମାନଙ୍କ ମନର ଅଧିକାରୀ ହୋଇ ସେମାନଙ୍କୁ ନର୍କଗାମୀ କରାଇଥିଲା । ଠିକ୍ ସେହିପରି ଆଜିର ସମାଜରେ ଚାଟୁକାରମାନେ ଅତ୍ୟାଧୁନିକ ଜଡ଼ବାଦୀ ଜନଗଣଙ୍କୁ ଅଳୀକ ସ୍ୱପ୍ନରେ ବିଭୋର କରି ସେମାନଙ୍କ ମନର ଅଧିନାୟକ ସାଜନ୍ତି ଏବଂ ଶେଷରେ ସେମାନଙ୍କୁ ନର୍କକୁଣ୍ଡ ମଧ୍ୟକୁ ଠେଲିଦିଅନ୍ତି । ଏହାର ଏକ ଅବିକଳ ଆଲେଖ୍ୟ ଦେଖିବାକୁ ମିଳେ– 'ଜନଗଣଙ୍କ ମନ ଓ ତାର ଅଧିନାୟକ' ଗଳ୍ପରେ ।

ବସ୍‌ରେ ବସିଥିବାବେଳେ ଗଳ୍ପନାୟକଙ୍କ ଦୃଷ୍ଟି ନିବଦ୍ଧ ହୋଇଛି ବସ୍‌ଷ୍ଟାଣ୍ଡର ପୂତିଗନ୍ଧମୟ ପରିଶ୍ରାଗାର ନଳା ନିକଟରେ କ୍ରୀଡ଼ାରତ ସୁନ୍ଦର ଶିଶୁଟି ଉପରେ । ସେହି ସମୟରେ ଅନ୍ୟ ସହଯାତ୍ରୀମାନେ ସତୃଷ୍ଣ ନୟନରେ ଚାହିଁ ରହିଥାନ୍ତି ବସ୍ ଭିତରେ ବୁଲି ବିକ୍ରି କରୁଥିବା ବୁଲାବିକାଳିର ଝଲମଲ ହାରଗୁଡ଼ିକୁ । ମନ୍ତ୍ରମୁଗ୍ଧ ଭାବେ ଶୁଣିଚାଲିଥା'ନ୍ତି ତା'ର ମନଭୁଲା ଭାଷାର ଚାଟୁକ୍ତିକୁ । ଗଳ୍ପ ନାୟକଙ୍କ ବ୍ୟତୀତ ଅନ୍ୟ କାହାରି ନିଘା ନ ଥାଏ ଶିଶୁଟି ପ୍ରତି । ଏହି ଶିଶୁଟି ପାଇଁ ତାଙ୍କ ମନରେ ଆଶଙ୍କା ଓ ସହାନୁଭୂତି ଦେଖାଦେଇଛି ।

ଗଳ୍ପନାୟକ ବ୍ୟସ୍ତତା ପ୍ରକାଶ କରୁଥିଲେ ମଧ୍ୟ ସମାଜର ଉଚ୍ଚଶ୍ରେଣୀର ବ୍ୟକ୍ତି ହୋଇଥିବାରୁ ଶିଶୁଟିକୁ ନିଜେ କୋଳେଇ ନେବାକୁ ବା କାହାର ଶିଶୁ ବୋଲି ପାଟିକରି କହିବାକୁ ଦ୍ୱିଧାଗ୍ରସ୍ତ ହୋଇପଡ଼ିଛନ୍ତି । ଏଭଳି ମନୋବୃତ୍ତିର ଆଉ ଏକ ପ୍ରମୁଖ କାରଣ ହେଉଛି, ବୁଲା ବିକାଳିର ବାକ୍‌ପଟୁତାକୁ ଉତ୍ତୀର୍ଣ୍ଣ ହେଲାଭଳି ଯାଦୁକାରୀ ଭାଷା ତାଙ୍କ ନିକଟରେ ଅଚିନ୍ତ୍ୟ । ବୁଲାବିକାଳିର କଣ୍ଠସ୍ୱରକୁ ପାଞ୍ଚ ଟଙ୍କା ବିନିମୟରେ ଦଶମିନିଟ୍ ପାଇଁ ସେ ଭଡ଼ା ମାଗିଛନ୍ତି । ମାତ୍ର କୌଣସି କାର୍ଯ୍ୟ ନିଜେ ନ କରି ଅନ୍ୟକୁ କରିବାକୁ କହିଲେ ତାହାର ଗୁରୁତ୍ୱ ହ୍ରାସ ପାଇବା ସହିତ ଆପଣାକୁ ଅପଦସ୍ଥ

ହେବାକୁ ପଡ଼େ । ଏହି ଦୃଷ୍ଟିଭଙ୍ଗୀରେ ସମାଜର ଜଣେ ଉଚ୍ଚଶ୍ରେଣୀର ବ୍ୟକ୍ତିଭାବେ ଗଞ୍ଜନାୟକଙ୍କୁ ସାମାନ୍ୟ ବୁଲା ବେପାରୀ ଉପେକ୍ଷା କରିଛି । ଲେଖକଙ୍କୁ ନିଜ କଣ୍ଠସ୍ୱର ପ୍ରୟୋଗ କରିବାକୁ ବେପାରୀ ତାଙ୍କୁ ପ୍ରତ୍ୟୁତ୍ତରରେ କହିବା ଅପମାନିତ କଥା ନୁହେଁ ତ ଆଉ କ'ଣ ହୋଇପାରେ !

ଗାଳ୍ପିକ କ୍ରୋଧାନ୍ୱିତ ହୋଇ ନିଜର ବିଦ୍ରୂପାତ୍ମକ ଭାଷା ଶୈଳୀରେ ଅବହେଳିତ ଶିଶୁଟିର ଭବିଷ୍ୟ ବିପଦ ସମ୍ବନ୍ଧରେ ସହଯାତ୍ରୀମାନଙ୍କୁ ଜଣେଇ ଦେଇଛନ୍ତି । ଶିଶୁ ପ୍ରତି ସେମାନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ସେ ମଧ୍ୟ ଚେଷ୍ଟା କରିଛନ୍ତି । ଅନେକ ସମୟରେ ବିରକ୍ତି ଓ କ୍ରୋଧରେ କୌଣସି କାର୍ଯ୍ୟ କଲେ ବା କଥା କହିଲେ ତାହାର ସୌନ୍ଦର୍ଯ୍ୟ ବୃଦ୍ଧି ପାଇବା ପରିବର୍ତ୍ତେ ହ୍ରାସ ହୁଏ ଏବଂ ପରିଶେଷରେ କର୍ତ୍ତାଙ୍କୁ ଉପହସିତ ହେବାକୁ ପଡ଼େ । ଗାଳ୍ପିକ ଏଠାରେ ଉପହସିତ ହେବାର ଆଉ ଏକ କାରଣ ହୋଇପାରେ ଯେ ସେ ନିଜେ ଶିଶୁଟିକୁ ନର୍ଦ୍ଦମା କଡ଼ରୁ ଉଦ୍ଧାର ନ କରି ଅନ୍ୟମାନଙ୍କୁ ବିଦ୍ରୂପ କରିବା । ପର ସମୟରେ ଧୂର୍ତ୍ତ ବୁଲାବେପାରୀ ଗମ୍ଭୀର, କରୁଣ, ଅନିର୍ବଚନୀୟ କଣ୍ଠ ସ୍ୱର ପ୍ରୟୋଗ କରି ସେହି ଅବହେଳିତ ଶିଶୁଟି ମାଆଛେଉଣ୍ଡ ଓ ତା'ର ପୁତ୍ର ବୋଲି ମିଥ୍ୟା ପରିଚୟ ଦେଇଛି । ଯାହାଫଳରେ ବସ୍‌ଯାତ୍ରୀମାନଙ୍କ ଚିତ୍ତରେ ଦୟା ଓ କାରୁଣ୍ୟର ରସ ସଞ୍ଚାର ପୂର୍ବକ ସେମାନଙ୍କ ଦାନକୁ ନେଇ ଗାଡ଼ିରୁ ଓହ୍ଲାଇ ଚାଲିଯାଇଛି । ଗାଡ଼ିରୁ ଅବତରଣ କରି ଶିଶୁଟିକୁ କୋଳେଇ ନେବ ବୋଲି ବସ୍‌ଯାତ୍ରୀଙ୍କ ଆଶା ଆଶାରେ ରହିଛି । ବୁଲା ବେପାରୀ ନେଇ ନାହିଁ କିମ୍ବା ବସଯାତ୍ରୀମାନେ ଆହା! ଆହା! ଶବ୍ଦ ଉଚ୍ଚାରଣ ବ୍ୟତୀତ ସେମାନଙ୍କ ହସ୍ତ ଶିଶୁଟି ପର୍ଯ୍ୟନ୍ତ ପ୍ରଲମ୍ବିତ ହୋଇନାହିଁ । ବସ୍ ଛାଡ଼ିଛି ଏବଂ ଶଠ ବୁଲାବେପାରୀକୁ ନେଇ ଯାତ୍ରୀମାନଙ୍କ ମଧ୍ୟରେ ତର୍କବିତର୍କରେ ସିଦ୍ଧାନ୍ତ ହୋଇଛି– "ନରକ ହିଁ ଆଜିର ମଣିଷର ନିବାସ । ଏ ପୃଥିବୀଟା ତ ଗୋଟାଏ ବିଶାଳ ନରକ ଯୋଉଠି ପଡ଼ିଯାଇଛୁ ଆମେ ସମସ୍ତେ । ଏଥିରୁ ରକ୍ଷା କାହିଁ କହନ୍ତୁ ତ !"[୯]

ନରକର ସ୍ଥୂଳ ବର୍ଣ୍ଣନା ବାସ୍ତବବାଦୀମାନଙ୍କ ପାଇଁ ବିଶ୍ୱାସଯୋଗ୍ୟ ହୋଇ ନ ପାରେ । କିନ୍ତୁ ସୂକ୍ଷ୍ମତତ୍ତ୍ୱ ଦୃଷ୍ଟିରେ ପାପର ପରିଣାମ ଭୋଗ କରିବା ସ୍ଥାନ-କାଳ-ପାତ୍ର ନିର୍ବିଶେଷରେ ଚିରନ୍ତନ ସତ୍ୟ । ପାପୀ ମୃତ ଅବସ୍ଥାରେ ନୁହେଁ, ଜୀବନ୍ତ

ଅବସ୍ଥାରେ ହିଁ ବିଭିନ୍ନ ରୋଗ, ଦୁର୍ଘଟଣା, ଆତ୍ମଜିଜ୍ଞାସ, ଅନୁଶୋଚନା, ଅସହାୟତା, ନିଃସଙ୍ଗତା ପ୍ରଭୃତି ଦଣ୍ଡ ଦ୍ୱାରା ଦଣ୍ଡିତ ହୁଏ । ଆଜିର ଜଡ଼ବାଦୀ ଜନତାଙ୍କ ଅମାନବୀୟ କାର୍ଯ୍ୟ ହେତୁ ସମଗ୍ର ପୃଥିବୀ ନରକର ଉପନିବେଶ ହେବାକୁ ଯାଉଛି ।

ଚାଟୁକାର ବୁଲାବେପାରୀର ମହାକାଳ ଫଳ ତୁଲ୍ୟ ଚାଟୁକ୍ତି ଓ ନକଲି ହାରରେ ପ୍ରଲୋଭିତ ହୋଇ ବସ୍‌ଯାତ୍ରୀମାନେ ଅବୋଧ ଶିଶୁଟି ପ୍ରତି ଅବହେଳା ପ୍ରଦର୍ଶନ କରିଛନ୍ତି । ପରିଣତିରେ ଅସହାୟତା ଓ ଅନୁଶୋଚନାରେ ଜର୍ଜରିତ ହୋଇ ପ୍ରକାରାନ୍ତରେ ସେମାନେ ନର୍କଗାମୀ ହୋଇନାହାଁନ୍ତି ତ ଆଉ କ'ଣ !

## ପ୍ରେମର ପ୍ରମାଣ

ପ୍ରେମ ମାନବର ଚିରନ୍ତନ ପ୍ରବୃତ୍ତି । ଏହାକୁ ଚରିତାର୍ଥ କରିବା ନିମନ୍ତେ ଇନ୍ଦ୍ରିୟ ବା ଇନ୍ଦ୍ରିୟାତୀତ ଅନୁଭୂତି ସ୍ତରରେ ଅବତୀର୍ଣ୍ଣ ହେବାକୁ ପଡ଼େ । ଇନ୍ଦ୍ରିୟାସକ୍ତ ପ୍ରେମ ସ୍ୱାର୍ଥପର ଓ ବିକାରଭାବ ପ୍ରକାଶ କରୁଥିବାବେଳେ ଇନ୍ଦ୍ରିୟାତୀତ ପ୍ରେମ ନିଃସ୍ୱାର୍ଥପର ଓ ଉଦାରତାର ପରିଚୟ ଦିଏ । ସଂପ୍ରତି କେବଳ ସହର ନୁହେଁ, ଗ୍ରାମୀଣ ସମାଜରେ ମଧ୍ୟ ଅବକ୍ଷୟ ଦେଖାଦେଇଛି । କାମ ବିକାରଗ୍ରସ୍ତ ବ୍ୟକ୍ତିଙ୍କ ଦୃଷ୍ଟିରେ ଶାଶ୍ୱତ କୃଷ୍ଣ ପ୍ରେମ ତତ୍ତ୍ୱ ନିରର୍ଥକ ହୋଇ ନିକୃଷ୍ଟ ଦୈହିକ ପ୍ରେମ ପ୍ରାଧାନ୍ୟ ଲାଭ କରିଛି । ଦୈହିକ ପ୍ରେମ କ୍ଷଣସ୍ଥାୟୀ ହୋଇଥିବାରୁ ପରିଣତିରେ ଏହା ଚିରସ୍ଥାୟୀ କୃଷ୍ଣପ୍ରେମ ନିକଟରେ ସର୍ବଦା ହାର ମାନେ । ଏହାକୁ ପ୍ରମାଣିତ କରେ 'ପ୍ରେମର ପ୍ରମାଣ' ଗଳ୍ପ ।

ଚାକିରିରୁ ଅବସର ନେଇ ବହୁଦିନ ପରେ ଗଳ୍ପ ନାୟକ ବଳଭଦ୍ର ସ୍ୱଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । ପ୍ରଭାତରେ ଗ୍ରାମ ସନ୍ନିଧ କେନାଲ୍ ପାର୍ଶ୍ୱରେ ଥିବା ତାଙ୍କ ପିଲାଦିନର କଦମ୍ବବୃକ୍ଷ ମୂଳରେ ବସି ପ୍ରକୃତିର ଦୃଶ୍ୟ ଉପଭୋଗ କରୁଥିବା ସମୟରେ ଯୁବକମାନେ ତାଙ୍କୁ ବୋଲୁଅ ପକାଇଛନ୍ତି । ବହୁବର୍ଷ ଧରି ଗ୍ରାମ ସହିତ କୌଣସି ସଂପର୍କ ରଖିପାରି ନ ଥିବାରୁ ସେ ଗ୍ରାମ୍ୟ ଯୁବକମାନଙ୍କ ଦ୍ୱାରା ଅପରିଚିତ ବିଦେଶୀ ଭାବେ ଅବାଞ୍ଛିତ ବିବେଚିତ ହୋଇଛନ୍ତି । କେନାଲ କୂଳ ମହିଳା ତୁଠରେ ସେ ଝିଅ, ବୋହୂଙ୍କ ମାନମହତ ଭଣ୍ଡୁର କରୁଛନ୍ତି ବୋଲି ଯୁବକମାନଙ୍କ ମନରେ ଭ୍ରାନ୍ତ

ଧାରଣା ସୃଷ୍ଟି ହୋଇଛି । ବଳଭଦ୍ର ତାଙ୍କୁ ଢେଲା ଫିଙ୍ଗିଥିବା ଯୁବକକୁ ଅନାବିଳ ସ୍ନେହରେ ନିଜ ବକ୍ଷରେ ଲଗେଇ ଧରିଛନ୍ତି । ତା'ର ସାଥୀ ଅନ୍ୟ ଯୁବକମାନଙ୍କୁ ମଧ ଭାବ ବିହ୍ୱଳିତ ପ୍ରୀତିପୂର୍ଣ୍ଣ ସମ୍ଭାଷଣ ଜଣାଇଛନ୍ତି । ପ୍ରତିହିଂସା ପରିବର୍ତ୍ତେ ନିଷ୍କପଟ ସ୍ନେହ ମମତା ଶତ୍ରୁକୁ ମିତ୍ରରେ ପରିଣତ କରେ । ସମ୍ଭବତଃ ଏହା ହିଁ ଶାନ୍ତିପ୍ରିୟ ଭାରତର ମୁଖ୍ୟ ଆୟୁଧ । ବଳଭଦ୍ରଙ୍କ ଆତ୍ମୀୟତାରେ ହିଂସାପ୍ରେମୀ ତରୁଣ ଗୋଷ୍ଠୀ ତାଙ୍କ ବଶ୍ୟତା ସ୍ୱୀକାର କରିଛନ୍ତି । ଏପରିକି ସେମାନେ ସମସ୍ତ ପ୍ରକାର ସାହାଯ୍ୟ କରିବାକୁ ତାଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ।

କଦମ୍ବ ବୃକ୍ଷ ମୂଳରେ ବଳଭଦ୍ର ଓ ଯୁବକମାନଙ୍କ ମଧରେ ବିଭିନ୍ନ ପ୍ରସଙ୍ଗରେ ଆଲୋଚନା ହୋଇଛି । ବଳଭଦ୍ର କଦମ୍ବବୃକ୍ଷର ମହାତ୍ମ୍ୟ ବର୍ଣ୍ଣନା କରି କହିଛନ୍ତି– "ଏଇ କଦମ୍ବବୃକ୍ଷର ଡାଳରେ ବସି ବଂଶୀ ବାଦନ କରିବାର ଦୃଶ୍ୟ ଦେଖିଛି ମୁଁ ସ୍ୱଚକ୍ଷୁରେ– ହଁ ହଁ – ସ୍ୱଚକ୍ଷୁରେ ଦେଖିଛି ମୁଁ ଏଇଠି,ଏଇ ଗଛଡାଳରେ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ ।"[୧୦]

ବଳଭଦ୍ରଙ୍କର କୃଷ୍ଣତତ୍ତ୍ୱ ପ୍ରତି ଗଭୀର ବିଶ୍ୱାସ ଥିଲେ ମଧ ଆଧୁନିକ ଜଡ଼ବାଦୀ ଯୁବକମାନଙ୍କୁ ଦୃଢ଼ ଯୁକ୍ତି ସମର୍ଥିତ ଉତ୍ତର ଦେବାରେ ତାଙ୍କର ଅକ୍ଷମତା ପ୍ରକାଶ ପାଇଛି । ଏ ଅକ୍ଷମତା ପ୍ରକାଶ ପାଇବା ସ୍ୱାଭାବିକ । କାରଣ ବିଶ୍ୱାସେ ମିଳନ୍ତି ହରି, ତର୍କେ ବହୁ ଦୂର । ଜଡ଼ବାଦୀ ଯୁବଗୋଷ୍ଠୀ ସ୍ଥିତପ୍ରଜ୍ଞ ବଳଭଦ୍ରଙ୍କ ମତକୁ ବିଶ୍ୱାସ କରିପାରନ୍ତି ନାହିଁ । ବରଂ ତାଙ୍କର ଶାଶ୍ୱତ ପ୍ରେମ ଶବ୍ଦ ଅଠର ବର୍ଷ ବୟସ୍କ ସାବାଳକ ବୋଲାଉଥିବା ଯୁବକ ମନରେ ବିକାରଭାବ ସୃଷ୍ଟି କରିଛି ଏବଂ ବଳଭଦ୍ର ସେମାନଙ୍କର ଉପହାସର ପାତ୍ର ହୋଇଛନ୍ତି । ଏଭଳି ବିକାରଗ୍ରସ୍ତ ଯୁବପିଢ଼ିଙ୍କୁ ସାବାଳକ ଭାବେ ପରିଚୟ ପ୍ରଦାନ କରିବା ସହିତ ସେମାନଙ୍କ ହାତରେ ଭୋଟ ଦେବାର କ୍ଷମତା ଅର୍ପଣ କରିବା ମାଙ୍କଡ଼ ହାତରେ ଶାଳଗ୍ରାମ ସଦୃଶ କହିଲେ ଅତ୍ୟୁକ୍ତି ହୋଇ ନ ପାରେ ।

ବସ୍ତୁବାଦ ସର୍ବସ୍ୱ ଯୁବକମାନଙ୍କ ପାଖରେ କୃଷ୍ଣ ପ୍ରେମତତ୍ତ୍ୱ ଉପହସିତ ହେଉଥିବା ଜାଣି ବଳଭଦ୍ର ପଶ୍ଚାତାପପୂର୍ବକ ସେ ସ୍ଥାନ ତ୍ୟାଗ କରିବାକୁ ବାହାରିଛନ୍ତି । ସେହି ସମୟରେ କେନାଲର ବିପରୀତ ପାର୍ଶ୍ୱସ୍ଥ ମହିଳା ତୁଠରୁ ଲୀଳାବତୀ ନାମ୍ନୀ

ପାଗଳୀ ବଳଭଦ୍ରଙ୍କୁ ଚିହ୍ନିପାରି କୁନା ବୋଲି ତାଙ୍କ ଡାକ ନାମ ଧରି ଡାକିଛନ୍ତି । ଲୀଳାବତୀ ଥିଲା ତାଙ୍କର ଚତୁର୍ଥ ଶ୍ରେଣୀର ସହପାଠିନୀ ଏବଂ ପୃଥ୍ୱୀରାଜଙ୍କ ସଂଯୁକ୍ତା ହରଣ ବିଷୟ ପଢ଼ା ହେଉଥିବାବେଳେ ଅକସ୍ମାତ ଉଭୟଙ୍କ ଚାରିଚକ୍ଷୁ ମିଳିତ ହୋଇଛି । ଲୀଳାବତୀଙ୍କ ସହିତ ବଳଭଦ୍ରଙ୍କ ପ୍ରେମ ସଂପର୍କ ମାତ୍ର ସେତିକି । ହେଲେ ଲୀଳାବତୀ ଅବିବାହିତ ରହି ପାଗଳୀ ହୋଇଛି । ବଳଭଦ୍ର ଲୀଳାବତୀକୁ ପ୍ରତାରିତ କରିଛି ବୋଲି ବହୁକାଳ ଧରି ଗ୍ରାମରେ ଅପପ୍ରଚାର ରଟିଛି । ଯୁବକମାନେ ଏହାର ସୁଯୋଗ ନେଇ ବଳଭଦ୍ରଙ୍କୁ ଲମ୍ପଟ, କାମୁକ ଭାବେ ବିଚାରି ସମାଲୋଚନାରେ ଶରବ୍ୟ କରିଛନ୍ତି । ପରେ ବଳଭଦ୍ର ଯୁବକମାନଙ୍କୁ ଅହିଂସା ଓ ଆତ୍ମନିର୍ଭରଶୀଳତାର ଉପଦେଶ ଦେଇଛନ୍ତି । ତାଙ୍କ ପିଲାଦିନର ପୁରାତନ ଡଙ୍ଗାଘାଟ ନ ପାଇ ବୃଦ୍ଧ ବୟସରେ ପ୍ରେମିକାକୁ ସ୍ୱୀକୃତି ଦେବା ନିମନ୍ତେ ପହଁରି ପହଁରି କେନାଲ ଆରପାରିକୁ ଯାଇଛନ୍ତି । ଏହା ଦେଖି ଯୁବକମାନେ ବଳଭଦ୍ରଙ୍କ ଶାଶ୍ୱତ ପ୍ରେମର ମୂଲ୍ୟ ବୁଝିଛନ୍ତି । ସେମାନଙ୍କର କଣ୍ଠରୁ ସ୍ୱତଃସ୍ଫୂର୍ତ୍ତ ଭାବେ ବାହାରି ଆସିଛି– "ଏ ଲୋକଟା ନିଶ୍ଚେ ତା' ପିଲାଦିନେ ଶ୍ରୀକୃଷ୍ଣଙ୍କୁ ଦେଖିଥିଲା ?"[୧୧]

## କଲେଜ ହତାରେ ଜହ୍ନରାତି

ପ୍ରାଚୀନ ଯୁଗରୁ ମାନବ ଓ ମାନବେତର ମଧ୍ୟରେ ଅହେତୁକ ସ୍ନେହ ସହାନୁଭୂତି ଥିବାର ଦେଖିବାକୁ ମିଳେ । ସାଂପ୍ରତିକ ସମୟରେ ମାନବେତର ମଧ୍ୟ ମାନବର ଅନ୍ତରଙ୍ଗ ବନ୍ଧୁ । ଏହି ବନ୍ଧୁତ୍ୱର ନିଦର୍ଶନ ହେଉଛି– 'କଲେଜ ହତାରେ ଜହ୍ନରାତି' ଗଳ୍ପ ।

ଶୁଦ୍ଧ, ପବିତ୍ର ଜ୍ଞାନମନ୍ଦିର ରୂପକ କଲେଜର ପରିସର ଆଜି କୁତ୍ସିତ ପ୍ରେମ, ନୀତିହୀନ ରାଜନୀତି, ସ୍ୱାର୍ଥପର ପ୍ରିୟାପ୍ରୀତି, ବିବେକହୀନ ମନ୍ତ୍ରଣା, ଅସାମାଜିକଙ୍କ ଦାଦାଗିରି ଓ ବୀଭତ୍ସ ନାରକୀୟତାରେ ହୋଇଛି ଅଶୁଦ୍ଧ, ଅପବିତ୍ର । ବିଶେଷକରି ପ୍ରେମର ବିକୃତ ରୂପ ପଲ୍ଲବିତ ହୋଇଛି କଲେଜ ମାଟିରେ । ଭାରତର ଦିବ୍ୟ ଜ୍ଞାନମନ୍ଦିର ଆଜି ରୂପାନ୍ତରିତ ହୋଇଛି ଅଦିବ୍ୟ ପ୍ରେମମନ୍ଦିରରେ । ବଡ଼ କ୍ଷୋଭର ବିଷୟ ହେଉଛି କେତେକ ଅଧ୍ୟାପକ, ଅଧ୍ୟାପିକାଙ୍କର ଛାତ୍ରଛାତ୍ରୀମାନଙ୍କ ସହିତ କୁତ୍ସିତ ପ୍ରେମସଂପର୍କ । ଏଭଳି ସଂପର୍କ ଭାରତର ବଳିଷ୍ଠ ଗୁରୁ ପରମ୍ପରା ପ୍ରତି ଏକ

ଉପହାସ କହିଲେ ଅପ୍ରାସଙ୍ଗିକ ହୋଇ ନ ପାରେ । ପୁନଶ୍ଚ ଏସବୁ ଦୁଷ୍କାର୍ଯ୍ୟରେ କେତେକ ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତିଙ୍କ ପ୍ରଚ୍ଛନ୍ନ ହାତ ଥାଏ । ପରନ୍ତୁ ସେମାନେ ଛାତ୍ରଛାତ୍ରୀଙ୍କ ରକ୍ଷକ ନାମରେ ଭକ୍ଷକ ସାଜନ୍ତି ଏବଂ କୋମଳମତି ନିଷ୍ପାପ ଛାତ୍ରଛାତ୍ରୀଙ୍କ ବ୍ୟକ୍ତିତ୍ୱ ଗଠନ ପରିବର୍ତ୍ତେ ଚରିତ୍ର ସ୍ଖଳନ କରିବାରେ ପଥପ୍ରଦର୍ଶକ ହୁଅନ୍ତି । କଲେଜର ଶାନ୍ତ, ଶୃଙ୍ଖଳିତ ପରିବେଶ ମଧ୍ୟରେ ଅଶାନ୍ତ, ବିଶୃଙ୍ଖଳା ବିରାଜ କରେ । ଏହିପରି ଏକ ବିଶୃଙ୍ଖଳା କଥା ଶୁଣି କଲେଜର ବଡ଼ବାବୁ ଅଧ୍ୟକ୍ଷଙ୍କୁ ରାତ୍ରି ଜଗୁଆଳ ବୀରବାହାଦୁରର ତାନ୍ତ୍ରିକତା ବିରୁଦ୍ଧରେ ଅଭିଯୋଗ ପତ୍ର ଦେଇଛନ୍ତି । ବଡ଼ବାବୁଙ୍କର ଅଭିଯୋଗ ହୋଇଛି ଯେ କଲେଜର ଜନୈକ ଯୁବ ଅଧ୍ୟାପକ ଛାତ୍ରୀ ନିବାସରୁ କୌଣସି ଛାତ୍ରୀକୁ ହରଣଚାଳ କରିନେବାକୁ ବୀର ବାହାଦୁର ତାଙ୍କୁ ଜଡ଼ିବୁଟି ଯୋଗାଇ ଦେଇଛି । ନିଶାର୍ଦ୍ଧରେ କଲେଜ ହତାସ୍ଥିତ ଛାତ୍ରୀନିବାସ ସମୀପବର୍ତ୍ତୀ ଆମ୍ରବୃକ୍ଷ ମୂଳରେ ଅଧ୍ୟାପକଙ୍କୁ ପାଖରେ ବସାଇ ତନ୍ତ୍ରବିଦ୍ୟା ଶିକ୍ଷା ଦେଉଛି ।

ଏ ଘଟଣାକୁ ତଦନ୍ତ କରିବାର ଦାୟିତ୍ୱ ଅଧ୍ୟକ୍ଷ ନିଜେ ବହନ କରି ଦିନେ ରାତ୍ରିରେ ତାହା ସଂପାଦନ କରିଛନ୍ତି । ଅଧ୍ୟକ୍ଷ ଚନ୍ଦ୍ରକିରଣରୁ ନିଜକୁ ଲୁକ୍‌କାୟିତ କରିବା ନିମନ୍ତେ ଶୁଭ୍ର ପୋଷାକ ପରିହିତ ହୋଇ ଏବଂ ତଦନ୍ତକାରୀର ସାଜସରଞ୍ଜାମ ଧରି ନୈଶ ଅଭିଯାନ ଆରମ୍ଭ କରିଛନ୍ତି । ଗନ୍ତବ୍ୟ ସ୍ଥଳଠାରୁ ଦଶଫୁଟ ଦୂରବର୍ତ୍ତୀ ଗୋଟାଏ ବୁଦା ଆଢୁଆଳରେ ନିଜକୁ ଗୁପ୍ତ ରଖି ସେ ଦେଖିବାକୁ ପାଇଛନ୍ତି ବାହାଦୁରର ମୁହଁକୁ ନିର୍ନିମେଷ ନୟନରେ ଅନାଇ ରହିଥାନ୍ତି ଦୁଇହଳ ଜ୍ୱଳନ୍ତ ଆଖି । ପୂର୍ବାଲୋଚିତ ଯୁବ ଅଧ୍ୟାପକ ଓ ଛାତ୍ରୀ ବୋଲି ତାଙ୍କର ବିଶ୍ୱାସ ହୋଇଛି ଏବଂ ସେ କ୍ରୋଧାନ୍ୱିତ ହୋଇ ଚିତ୍କାର କରି ଉଠିଛନ୍ତି । ତାଙ୍କର ବିକଟାଳ ସ୍ୱର ଶୁଣି ଆଖି ଦୁଇ ହଳ ହଠାତ୍ ଅନ୍ତର୍ଦ୍ଧାନ ହୋଇଛନ୍ତି ଏବଂ ବାହାଦୁର ଅଧ୍ୟକ୍ଷଙ୍କୁ ସାଲ୍ୟୁଟ୍ ମାରିଛି । ସେହି ଆଖି ଦୁଇଯୋଡ଼ି କାହାର ବୋଲି ଅଧ୍ୟକ୍ଷ ବାରମ୍ୱାର କ୍ରୋଧିତ ସ୍ୱରରେ ବାହାଦୁରକୁ ପ୍ରଶ୍ନ କରିଛନ୍ତି । ବାହାଦୁର ଅଧ୍ୟକ୍ଷଙ୍କୁ ଶାନ୍ତ କରାଇ ପାଖରେ ବସାଇଛନ୍ତି ଏବଂ ମନ୍ତ୍ର କଳାପରି ଗୁଣୁଗୁଣୁ ହେବାରୁ ଗର୍ତ୍ତ ମଧ୍ୟରୁ ସୁବର୍ଣ୍ଣ ରଙ୍ଗର କୋକିଶିଆଳି ଦ୍ୱୟ ଆତ୍ମପ୍ରକାଶ କରି ଅଧ୍ୟକ୍ଷଙ୍କ ପାଖକୁ ଲାଗି ଆସିଛନ୍ତି । ଏହି ସମୟରେ ବାହାଦୁର ତା'ର ଓଭର କୋଟ୍‌ରୁ ମୁଠାଏ ଖାଦ୍ୟପଦାର୍ଥ କାଢ଼ି ସେମାନଙ୍କ ଆଡ଼କୁ ନିକ୍ଷେପ

କରିଛି । ତିନିହଜାର ଛାତ୍ରଙ୍କ ଛ' ହଜାର ଆଖିରୁ ବଞ୍ଚି ଏମାନେ ରହିପାରିଛନ୍ତି କେମିତି ବୋଲି ଓଲଟି ବୀରବାହାଦୁରଙ୍କୁ ଅଧକ୍ଷ ପଚାରିଛନ୍ତି ।

ଶ୍ରଦ୍ଧା ପଶୁଙ୍କୁ କରେ ସ୍ନେହଶୀଳ, କରେ ଆପଣାର । ସ୍ୱାର୍ଥପରତା ଓ ଅହଂକାର ମଣିଷକୁ କରେ ମଣିଷର ଚରମ ଶତ୍ରୁ । ତିନିହଜାର ଛାତ୍ରଛାତ୍ରୀଙ୍କ ମଧ୍ୟରୁ ଏକା ବାହାଦୁର ହିଁ ମାତ୍ର ଦୁଇଟି କୋକିଶିଆଳିର ବନ୍ଧୁ ହୋଇଛନ୍ତି । କଲେଜର ନିମ୍ନତମ ପଦାଧିକାରୀ ବାହାଦୁରର ଉଦାର ମାନବିକତା ନିକଟରେ ଉଚ୍ଚତମ ପଦବୀଧାରୀ ଅଧକ୍ଷଙ୍କ ଦୃପ୍ତ କ୍ଷମତା ନତମସ୍ତକ ହୋଇଛି ଏବଂ ସେ ସସ୍ନେହରେ ବାହାଦୁରର ସ୍କନ୍ଧକୁ ନିଜ ଆଡ଼କୁ ନିବିଡ଼ ଭାବରେ ଆକର୍ଷି ଆଣିଛନ୍ତି ।

## ମାଟିର ସ୍ୱପ୍ନ

ମାଟିକୁ ଛାଡ଼ି ମାନବର ସ୍ଥିତି କଳ୍ପନା କରାଯାଇ ନ ପାରେ । ମାନବର ଘଟ ମାଟି ସର୍ବସ୍ୱ କହିଲେ ଅତ୍ୟୁକ୍ତି ହେବନି । ଆଜନ୍ମରୁ ମାଟି ପ୍ରତି ତା'ର ସ୍ୱପ୍ନଜାତ ହେବା ସ୍ୱଭାବ ସିଦ୍ଧ । ମାତ୍ର ମାନବ ବିଶ୍ୱର ପାର୍ଥିବ ଜଗତ ପ୍ରତି ଅତୀବ ମୋହାସକ୍ତ ହୋଇ ପରିଣତିରେ ଭୋଗେ ଅସହ୍ୟ ଦୁଃଖଯନ୍ତ୍ରଣା । ବସ୍ତୁବାଦ ପ୍ରତି ପ୍ରବଳ ଆସକ୍ତି ନିର୍ମମ ଦୁଃଖ ଯାତନାକୁ ଯେଉଁଭଳି ଆମନ୍ତ୍ରଣ କରିଛି, ତାହାର ସ୍ୱରୂପ ଦେଖିବାକୁ ମିଳେ 'ମାଟିର ସ୍ୱପ୍ନ' ଗଳ୍ପରେ ।

ଗଳ୍ପ ନାୟକ ମଦନ ପାତ୍ର ସାଗର ସୈକତ ମଧ୍ୟରେ ମୂଲ୍ୟବାନ ମାଦକ 'ହିରଇନ୍' ମୁଣ୍ଡାର ସନ୍ଧାନ ପାଇଛନ୍ତି । ହିରଇନ୍‌କୁ ଚିହ୍ନି ନ ପାରିବାରୁ ତାଙ୍କ ମନରେ କୌତୁହଳ ଜାତ ହୋଇଛି । ସେଥିରୁ ସେ ଟିପେ ନେଇ ନିଆଁ ସରାରେ ରଖିବାରୁ ତା'ର ବାସ୍ନାରେ ଯୁବକମାନେ ପାତ୍ରଙ୍କ ଘରକୁ ପଶିଆସିଛନ୍ତି ଏବଂ ତାଙ୍କର ସେହି ଅଜ୍ଞାତ ଚିଜ ହିରଇନ୍ ମୁଣ୍ଡାକୁ ଝାମ୍ପି ନେଇଛନ୍ତି । ସେତେବେଳେ ଯାଇ ସେ ସେହି ଦୁର୍ମୂଲ୍ୟ ହିରଇନ୍‌କୁ ଚିହ୍ନିଛନ୍ତି, ଯାହାର ଦାମ୍ ସୁନା ରୁପାଠାରୁ ଅଧିକ । ଅନୁତପ୍ତ ମଦନ ତାଙ୍କ ପତ୍ନୀ ସହିତ ସିନ୍ଧୁ ସୁତାଙ୍କ ନିକଟରେ ସମୁଦ୍ର ବେଳାରେ ଅଧିଆ ପଡ଼ିଛନ୍ତି ପୁଣି କିଛି ଧନପ୍ରାପ୍ତିର ଉଦ୍ଦେଶ୍ୟରେ । ବର୍ଷକ ମଧ୍ୟରେ ଦିନେ ଯାମିନୀର ଅନ୍ତିମ ପ୍ରହରରେ ପାତ୍ରେଙ୍କ କ୍ଷେତରେ ସୁନା ଲଟେଇଛି ବୋଲି

ସ୍ୱପ୍ନାଦେଶ ହୋଇଛି । ପାତ୍ରେ ପାଞ୍ଚ ହାଣ୍ଡି ସୁନା, ରୂପା, ତମ୍ବା ମାଟିରୁ ଉଦ୍ଧାର କରି ଧୋଇ ରଖୁଥିବା ବେଳେ ଏମ୍.ଏଲ୍.ଏ, ମନ୍ତ୍ରୀ, ପ୍ରଧାନମନ୍ତ୍ରୀ ହେବାର ସ୍ୱପ୍ନ ଦେଖୁଛନ୍ତି । ମଦନ ତାଙ୍କର ସୁନେଲୀ ଭବିଷ୍ୟତକୁ ପତ୍ନୀ ସମ୍ମୁଖରେ ରୂପରେଖ ଦେଇ କହିଛନ୍ତି– "ଆସୁଚି ଆଗକୁ ଇଲେକ୍‌ସନ୍ । ବୁଝିଲୁ ? ଏଥର କିଏ ମତେ ଟିକେଟ ନ ଦବ ଦେଖିବା । ଏମ୍.ଏଲ୍.ଏ ହେବି, ମନ୍ତ୍ରୀ ହେବି, ମୁଖ୍ୟମନ୍ତ୍ରୀ ହେବି, ଖାଲି ସେତିକି... ପ୍ରଧାନମନ୍ତ୍ରୀ ଯଦି ନ ହୋଇଚି କୁତ୍ତା ପାଳିବୁ ମୋ ନାଁରେ... ଜାଗିଁଲୁଟି ?"[୧୨]

ପୋତାମାଲ ସ୍ୱ-ଉପାର୍ଜିତ ଧନ ନୁହେଁ । ନିଜ କ୍ଷେତରୁ ମିଳିଥିଲେ ମଧ୍ୟ ତାହା କଳାଧନ ରୂପେ ବିବେଚିତ ହେବା ବିଧେୟ । ଏହି କଳାଧନ ଦ୍ୱାରା ନିଜେ ମନ୍ତ୍ରୀ ହେବାର ସ୍ୱପ୍ନ ଦେଖିବା ଆତ୍ମସ୍ୱାର୍ଥ ଛଡ଼ା ଅନ୍ୟ କିଛି ନୁହେଁ । ଓଡ଼ିଶା ମାଟିରେ ମହାର୍ଘ ଖଣିଜ ପଦାର୍ଥ ଗଚ୍ଛିତ ଥିବାବେଳେ ଓଡ଼ିଆମାନେ କାହିଁକି ଦୀନଦରିଦ୍ର ବୋଲି ପାତ୍ରଙ୍କ ମନରେ ଦରଦୀ ପ୍ରଶ୍ନ ସୃଷ୍ଟି ହୋଇଛି । ଓଡ଼ିଆଙ୍କ ପାଇଁ ଏଭଳି ଚିନ୍ତାକରୁଥିବା ବେଳେ ତାଙ୍କ ଗାଁର ଯୁବକମାନେ ପାତ୍ରଙ୍କ ଘରକୁ ପଶିଆସିଛନ୍ତି । ସମସ୍ତ ପୋତାଧନକୁ ନେଇଯିବା ସହିତ ଧସ୍ତାଧସ୍ତିରେ ତାଙ୍କ ପରିବାରକୁ ସେମାନେ ରକ୍ତାକ୍ତ କରିଦେଇଛନ୍ତି । ପରିଶ୍ରମକାତର ହୋଇ ରାତାରାତି କୋଟିପତି ବନିଯିବା ଆଶାରେ ପୋତାଧନ ବା କଳାଧନ ପଛରେ ଦୌଡ଼ିଲେ ପାତ୍ରଙ୍କ ଭଳି ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼େ । ଲୋକମାନଙ୍କ ଆକ୍ରମଣରେ ତାଙ୍କର ପୋତାଧନ ପ୍ରତି ଥିବା ଆସକ୍ତି ଦୂର ହୋଇନାହିଁ । ଯୁବକଙ୍କ ଦୃଷ୍ଟିରୁ ବଞ୍ଚିଥିବା ଗୋଟିଏ ହନୁମାନ ମାର୍କା ପଇସାକୁ ଦୁଇଟି ପାର୍ଟି ଲକ୍ଷାଧିକ ଟଙ୍କା ଯାଚିଛନ୍ତି । ମାତ୍ର ପାତ୍ରଙ୍କର ପୁତ୍ର ତାଙ୍କ ଅଗୋଚରରେ ତାକୁ ଗୋଟିଏ ଗୁଡ଼ିଆ ଦୋକାନୀକୁ ଦେଇ ଯୋଡ଼ିଏ ବରା ଓ ଗୋଟିଏ ରସଗୋଲା ଖାଇସାରିଥାଏ । ଏକଥା ଜାଣି ପାତ୍ର ଦମ୍ପତି ଦୁଃଖରେ ମ୍ରିୟମାଣ ହୋଇପଡ଼ିଛନ୍ତି ।

ସ୍ୱପ୍ନ ଦର୍ଶନାନୁଯାୟୀ ପୋତାଧନ ମିଳିବା ଅଦ୍ଭୁତ ମନେହେଲେ ମଧ୍ୟ ଅନାୟାସ ଲବ୍ଧ କଳାଧନର ଅନୁଗାମୀ ହେଲେ ଜୀବନ ଦୁର୍ବିସହ ଦୁର୍ବିପାକର ସମ୍ମୁଖୀନ ହୁଏ । ପୁଣି ପାପ ଧନ ଗଲାବେଳେ ମୂଳ ସହିତ ଯିବାର ନଜିର୍ ଦେଖିବାକୁ ମିଳେ ମାଟିର ସ୍ୱପ୍ନ ଗଳ୍ପରେ ।

## ଅଜିତ ରାୟଙ୍କ ସମାଧିସ୍ତୂପ

ଦେଶର ଦୁର୍ଗତି ପାଇଁ କେବଳ ରାଜନୈତିକ ବ୍ୟକ୍ତି ନୁହଁନ୍ତି, ପ୍ରଶାସନିକ ପଦାଧିକାରୀ ମଧ୍ୟ ଦାୟୀ । ଜଣେ ରାହୁ ହେଲେ ଅନ୍ୟ ଜଣେ କେତୁ । ପ୍ରଶାସନିକ ବ୍ୟକ୍ତିଙ୍କ ଦୁର୍ନୀତି, ଦୁର୍ବଳତା ସାଧାରଣ ଜନତାଙ୍କ ନିକଟରେ ଅପ୍ରକାଶ ରହିଯାଉଥିବା ବେଳେ କେତେକ ସମୟରେ ତାହା ତଳିଆ କର୍ମଚାରୀଙ୍କ ସମ୍ମୁଖରେ ପ୍ରକାଶ ପାଇଯାଏ । ଉଚ୍ଚପଦସ୍ଥ ଅଫିସରଙ୍କ ଦୁର୍ବଳତାର ସୁଯୋଗ ନେଇ ତଳ କର୍ମଚାରୀ ତାଙ୍କ ପ୍ରତି ଅବଜ୍ଞା ପ୍ରକାଶ ପୂର୍ବକ ନିଜର ସ୍ୱାର୍ଥ ହାସଲ କରିବାକୁ ଲାଗେ । ଏକଥା ଜାଣି ମଧ୍ୟ ଉଚ୍ଚପଦାଧିକାରୀ ନିମ୍ନ କର୍ମଚାରୀଙ୍କୁ ବିରୋଧ କରିବା ତ ଦୂରର କଥା, ମୁହଁ ଖୋଲି ପଦେ କହିପାରେ ନାହିଁ । ନିଜର ଅପକର୍ମ ଜନିତ ଗ୍ଲାନିରେ ତାଙ୍କର ଜୀବନ୍ତ ଶରୀରଟା ତଳିଆ କର୍ମଚାରୀ ସମ୍ମୁଖରେ ସତେଯେପରି ସମାଧିସ୍ତୂପରେ ପରିଣତ ହୋଇଯାଏ । ଉଚ୍ଚପଦସ୍ଥ ଅଧିକାରୀଙ୍କ ଦୁର୍ନୀତି ଓ ବିକଳ ରୂପର ଚିତ୍ର ପ୍ରଦାନ କରେ 'ଅଜିତ୍ ରାୟଙ୍କ ସମାଧିସ୍ତୂପ' ଗଳ୍ପ ।

ଜଡ଼ବାଦୀ ଯୁବସମାଜକୁ ପ୍ରଲୁବ୍ଧ କରିଛି ସରକାରୀ ବୃତ୍ତିର କଳାଧନ ଓ କ୍ଷମତା । ଅଜିତ୍ ରାୟ ଚାକିରି ଉଦ୍ଦେଶ୍ୟରେ ଆସିଛନ୍ତି ଭୁବନେଶ୍ୱର । କିରାଣିରୁ ଚାକିରି ଆରମ୍ଭ କରି ଦୁଇ ଦଶନ୍ଧି ମଧ୍ୟରେ ସେକ୍ରେଟେରୀଏଟ୍‌ର ଡେପୁଟି ସେକ୍ରେଟେରୀ ହୋଇଛନ୍ତି । ଅଜିତ୍‌ବାବୁ ଭୁବନେଶ୍ୱରରେ ସାମାଜିକ ପ୍ରତିଷ୍ଠା ଲାଭ କରିଥିଲେ ମଧ୍ୟ ସହରର ଇତିହାସ, ସଂସ୍କୃତି, ପ୍ରକୃତି ପ୍ରତି ସେ ଥିଲେ ସଂପୂର୍ଣ୍ଣ ଅଜ୍ଞ । ଚାକିରିର ମୋହରେ ନିଜର ପତ୍ନୀଙ୍କୁ ମଧ୍ୟ ଉପେକ୍ଷା କରିଛନ୍ତି ।

ପାପଧନ ପ୍ରାୟଶ୍ଚିତରେ ଯାଏ । ଅଜିତ୍ ରାୟଙ୍କ ପାପଧନର ପ୍ରତୀକ କଳାଧନକୁ ଆତ୍ମସାତ କରିଛି ତାଙ୍କ ଅଫିସ୍‌ର ପିଅନ ନଟ ମଳିକ । ନଟ ଅଜିତ୍‌ବାବୁଙ୍କ ପତ୍ନୀଙ୍କୁ ପ୍ରତାରିତ କରି ଜର୍ସିଗାଈ କିଣାଇ ଦେବା ଓ ତାଙ୍କୁ ଡେପୁଟି ସେକ୍ରେଟେରୀ କରାଇଦେବା ନିମନ୍ତେ ସାତ ହଜାର ଟଙ୍କା ଠକି ନେଇଥିବା ଜାଣି ଅଜିତ୍‌ବାବୁ ନିଜ ପତ୍ନୀଙ୍କ ଉପରେ ବିରକ୍ତି ପ୍ରକାଶ କରିଛନ୍ତି । ଅଜିତ୍‌ବାବୁ ଡେପୁଟୀ ସେକ୍ରେଟେରୀ ହେବା ପରେ ତାଙ୍କ ପ୍ରତି ହେୟ ମନୋଭାବ ପ୍ରଦର୍ଶନପୂର୍ବକ ପିଅନ ନଟ ମଳିକ

ତାଙ୍କୁ ଲଟେରୀ ଟିକେଟ୍ କିଣିବାର ଆକ୍ଷେପୋକ୍ତି କରି କହିଛି– "ସାର୍, ଲଟେରୀ ନୁହେଁ ତ ଆଉ କଅଣ କି ଏ ଫାଇଲ୍‌ଗୁଡ଼ାକ ? ଏଗୁଡ଼ାକ ଗୋଟାଏ ଗୋଟାଏ ଲଟେରୀ ଟିକେଟ୍ ସାର୍ । କୋଟିଏ, ପାଞ୍ଚକୋଟି, ଦଶକୋଟି ଟଙ୍କାର ଟେଣ୍ଡର ଫାଇଲ ଯେଉଁ କଲମ ତଳେ ଯା ଆସ କରୁଛି ସାର୍, ତାକୁ କୋଉ ନାଗାଲାଣ୍ଡ ଲଟେରି କୋଉ ଭୁଟାନ ଲଟେରି ବୋଲି ଓଲ ପଢ଼ିବ କହୁ ନାହାନ୍ତି ?"[୧୩] ଉଚ୍ଚପଦସ୍ଥ ଅଫିସରଙ୍କ ଦୁର୍ବଳତା ପ୍ରକାଶ ପାଇଲେ ନିମ୍ନ କର୍ମଚାରୀର ତାଙ୍କ ପ୍ରତି ଭୟ ଓ ସମ୍ମାନ ତୁଟିଯାଏ । ତେଣୁ ନଟ ମଳିକ ଅଜିତ୍‌ବାବୁଙ୍କ ପ୍ରତି କେବଳ ହେୟ ଭାବ ପ୍ରକାଶ କରିନାହିଁ ବରଂ ତାଙ୍କଠାରୁ ନିଜର ସ୍ୱାର୍ଥ ହାସଲ କରିବା ନିମନ୍ତେ ସତତ ଚେଷ୍ଟିତ ହୋଇଛି । ସେ କୁଆଖାଇ ତଟିନୀ ତଟରେ ହୋଟେଲ କରିବାର ପ୍ରଲୋଭନ ଦେଖାଇ ଏଥି ନିମନ୍ତେ ସରକାର ପ୍ରଦତ୍ତ ନିଜର ଜମି ପାଞ୍ଚ ଏକରକୁ କିଣିନେବା ପାଇଁ ଅଜିତ୍‌ବାବୁଙ୍କୁ ପ୍ରବର୍ତ୍ତାଇଛି । ଧୂର୍ତ୍ତ ନଟ ମଳିକର ଜମିକୁ କିଣିବା ପାଇଁ ଅଜିତ୍‌ବାବୁ ନିରବ ରହିବା ଉତ୍ତାରେ ସେ ତାଙ୍କ ପତ୍ନୀଙ୍କୁ ପୁନର୍ବାର ପ୍ରତାରିତ କରିଛି ।

ଅଜିତ୍‌ବାବୁ ଦିନେ ସେହି ଜାଗା ଦେଖିବାକୁ ଯାଇ ଦେଖନ୍ତି ତ ତାଙ୍କର ପତ୍ନୀ ନଟ ସହିତ ଜମି ପର୍ଯ୍ୟବେକ୍ଷଣ କରିବାରେ ବ୍ୟସ୍ତ । ନିଜ ସ୍ତ୍ରୀକୁ ନଟ ସହିତ ଦେଖି ସେ ସମାଧିସ୍ତୂପ ପରି ନିସ୍ପନ୍ଦ ଓ ନିର୍ବାକ୍ ଭାବେ ଠିଆହୋଇ ରହିଛନ୍ତି । ନଟ ଜଣେ ଭଲ ମଣିଷ ଓ ସେମାନଙ୍କର ବିଶ୍ୱସ୍ତ ଲୋକ ବୋଲି ପତ୍ନୀ ତାଙ୍କୁ ବୁଝାଇ ତା' ଜମି କିଣିବାର ପ୍ରସ୍ତାବ ଦେଇଛନ୍ତି । ନଟ ମଳିକର ଏସବୁ କାର୍ଯ୍ୟରେ ବିରୋଧ କରିବା ପାଇଁ ଅଜିତ୍‌ବାବୁଙ୍କର ସତ୍ ସାହାସ ନ ଥାଏ । କାରଣ ତାଙ୍କର ସମସ୍ତ ଦୁର୍ବଳତା ନଟ ମଳିକକୁ ଜଣାଥାଏ ଏବଂ ତାଙ୍କ ଅର୍ଦ୍ଧାଙ୍ଗିନୀର ଦୃଢ଼ ସମର୍ଥନ ନଟ ପାଇଥାଏ । ସ୍ତ୍ରୀର ସୁଖ ସୁବିଧା ପାଇଁ ଅଜିତ୍‌ବାବୁ କଳାଧନ ଠୁଳ କରି ଚାଲିଥା'ନ୍ତି । ମାତ୍ର ଟାଉଟର ନଟ ମଳିକ କଥାରେ ଧନର ବିନର୍ବୟ କରିବା ସହିତ ତାଙ୍କ ଗଲତିକୁ ତା' ଆଗରେ ସ୍ତ୍ରୀ ପ୍ରକାଶ କରିଦିଅନ୍ତି । ଯଦ୍ଦ୍ୱାରା ଅଜିତବାବୁ କିଂକର୍ତ୍ତବ୍ୟବିମୂଢ଼ ହୋଇ ଅବ୍ୟକ୍ତ ବେଦନାରେ ଜୀବନ୍ତ ଅବସ୍ଥାରେ ସତେଯେପରି ସମାଧି ପାଲଟିଛନ୍ତି ।

ଅଜିତ୍‌ବାବୁଙ୍କ ସମାଧିସ୍ତୂପ ଗଳ୍ପରେ ଆଧୁନିକ ମାନବର ଅସହାୟତା ବ୍ୟକ୍ତ ହେବା ସହିତ କଳାଧନର ପରିଣାମ ଯେ କେତେ ଅସ୍ୱସ୍ତିକର ତା' ବେଶ୍ ବିବେଚନାର ବିଷୟ ହୋଇଛି ।

## ଅଗଷ୍ଟ ପନ୍ଦର

ଅତୀତର ଐଶ୍ୱର୍ଯ୍ୟମୟ ଭାରତ ଭୂମି ଅନେକ ବିଦେଶୀଙ୍କୁ ପ୍ରଲୁବ୍ଧ କରିଛି । କେହି ଆକ୍ରମଣ କରି ବା କେହି ପ୍ରତାରଣା କରି ଭାରତକୁ ଅଧିକାର କରିଛି । ପ୍ରତାରକ ବିଦେଶୀ ମଧ୍ୟରେ ଇଂରେଜ ଅଗ୍ରଗଣ୍ୟ । ସୌଦାଗରି କରିବାକୁ ଆସି ଇଂରେଜ ହୋଇଛି ଭାରତର ଛତ୍ରଧାରୀ । ଇଂରେଜଙ୍କ ଅତ୍ୟାଚାରରେ ଭାରତୀୟ ଜନତା ସ୍ୱାଧୀନତା ପାଇଁ ବ୍ୟଗ୍ର ହୋଇପଡ଼ିଛନ୍ତି । ଶେଷରେ ମହାତ୍ମା ଗାନ୍ଧିଙ୍କ କଳ୍ପିତ ସୁଖ, ଶାନ୍ତି, ନ୍ୟାୟର ପ୍ରତୀକ ରାମରାଜ୍ୟର ଆଶା ନେଇ ଭାରତୀୟ ଜନତା ବହୁ କଷ୍ଟ ସ୍ୱୀକାର କରି ୧୯୪୭ ମସିହା ଅଗଷ୍ଟ ପନ୍ଦରରେ ସ୍ୱାଧୀନତା ହାସଲ କରିଛନ୍ତି । କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ଭାରତୀୟଙ୍କ ସୁଖ,ଶାନ୍ତି କେବଳ ସ୍ୱପ୍ନରେ ରହିଯାଇଛି । ବିଦେଶୀ ହାତରୁ ସ୍ୱାଧୀନତା ପାଇଥିଲେ ମଧ୍ୟ ସ୍ୱଦେଶୀମୁଖା ପରିହିତ ରାବଣମାନଙ୍କ ହାତରେ ରାମରାଜ୍ୟର ସ୍ୱପ୍ନ ବିଡ଼ମ୍ବିତ ହୋଇଛି । ଆଜିର ଭାରତୀୟ ଜନତା ସ୍ୱାଧୀନତା ପ୍ରାପ୍ତିର ସ୍ମାରକ ଅଗଷ୍ଟ ପନ୍ଦର ପାଳନ କରିବା ପାଇଁ ଆଗ୍ରହୀ ନୁହେଁ । ଦେଶ ପ୍ରୀତି ପ୍ରତି ଥିବା କୁଣ୍ଠିତ ଭାବର ପରିପ୍ରକାଶ ହୋଇଛି 'ଅଗଷ୍ଟ ପନ୍ଦର' ଗଳ୍ପରେ ।

ଜାତୀୟ ଦିବସ ଅଗଷ୍ଟ ପନ୍ଦର ତାରିଖ ପ୍ରାତଃକାଳରେ ଟିଭିରୁ ଜାତୀୟ ସଙ୍ଗୀତ ଶୁଣି ଡେପୁଟି ସେକ୍ରେଟେରୀ ଜୟନ୍ତବାବୁ ଅନିଚ୍ଛା ସତ୍ତ୍ୱେ ବି ବିବେକର ତାଡ଼ନାରେ ଆଟେନ୍‌ସନ୍ ପୋଜିସନ୍ ନେଇଛନ୍ତି । କିନ୍ତୁ ସେପର୍ଯ୍ୟନ୍ତ ଶୟନରତ ନିଜର ଅପତ୍ୟମାନଙ୍କ ଜାତୀୟ ବିରାଗୀ ମନୋଭାବକୁ ଲକ୍ଷ୍ୟ କରି ତାଙ୍କର ଭାବାନ୍ତର ସୃଷ୍ଟି ହୋଇଛି । ଜ୍ୟେଷ୍ଠପୁତ୍ର, ମେଧାବୀ ଛାତ୍ର ସୁବ୍ରତଙ୍କ ମତରେ ଜାତୀୟ ସଙ୍ଗୀତ ପୁଲିସ ଗୀତ, ୟୁନିଫର୍ମ ଗୀତ । କନିଷ୍ଠ ପୁତ୍ର, କ୍ରିକେଟ୍ ଖେଳାଳୀ ସୁଖ୍ୟାତ ମୁହଁରୁ କଥା କଥାକେ ଗାଭାସ୍କର, କପିଳଦେବଙ୍କ ନାମ ଉଚ୍ଚାରିତ ହେଉଥିବା ବେଳେ ଭାରତମାତା ବା ମହାତ୍ମାଗାନ୍ଧିଙ୍କ ନାମ ତା' କାନରେ ବାଜିଲେ କ୍ଷଣକୁ ନାଲିକନା ଦେଖାଇଲା ଭଳି ଫଁ ଫଁ ହୁଏ । ଜାତୀୟ ଦିବସକୁ ଆଳସ୍ୟ ଦିବସ ଭାବି ସେ

ଆରାମରେ ଶୋଇରହେ। ଅଲିଅଳୀ କନ୍ୟା ହାଇସ୍କୁଲ ଛାତ୍ରୀ ସୁଦେଷ୍ଣାର ମଧ୍ୟ ରବୀନ୍ଦ୍ର ସଙ୍ଗୀତ ପ୍ରତି ବିରାଗଭାବ ଜାତ ହୋଇଛି। ରେଡିଓରୁ ରବୀନ୍ଦ୍ର ସଙ୍ଗୀତ ବୋଲା ହେଉଥିବାର ଶୁଣି ଅସହିଷ୍ଣୁ ଭାବେ ସୁଇଚ୍ ବନ୍ଦ କରି କହିପକାଇଛି– "କାହିଁକି ଆମର କେହି ଓଡ଼ିଆ କବି ନାହାଁନ୍ତି ନା କ'ଣ? ସବୁବେଳେ ସେହି ଗୋଟାଏ ନାଁ ରବୀନ୍ଦ୍ରନାଥ, ରବୀନ୍ଦ୍ରନାଥ! କି ଗୀତ ଲେଖିଚନ୍ତି କି ସେ ଏମିତି?"[୧୪]

ଜାତୀୟ ସଙ୍ଗୀତ, ଜାତୀୟ ଦିବସ, ଜାତୀୟ ନେତା, ଜାତୀୟ କବିଙ୍କ ପ୍ରତି ପ୍ରକାଶ ପାଇଥିବା ପ୍ରତିକୂଳ ଭାବନାକୁ ଜାତୀୟ ବିରୋଧି ଭାବନା କୁହାଯାଇପାରେ। କିନ୍ତୁ ଜାତୀୟ ଖେଳାଳୀ ଗାଭାସ୍କର ଓ କପିଳଦେବ, ଓଡ଼ିଶାର କବିଙ୍କ ପ୍ରତି ଅନୁକୂଳ ଭାବନାକୁ କେଉଁ ଭାବ ସହିତ ତୁଳନା କରାଯାଇପାରେ! ଦେଶର ଯୁବ ସମାଜର ଏଭଳି ଭାବନାକୁ ସ୍ଥୁଳ ରୂପେ ଜାତି ବିରୁଦ୍ଧ ନ ଭାବି ବରଂ ସହୃଦୟତାର ସହ ସେମାନଙ୍କ ଅସନ୍ତୋଷର ମନୋବୃତ୍ତିକୁ ବୁଝିବା ବିଧେୟ।

ସୁବ୍ରତର କ୍ୟାରିଅର ଫାଷ୍ଟକ୍ଲାସ୍ ଏବଂ ଏମ୍.ଏସ୍‌ସି ଫିଜିକ୍ସରେ ଫାଷ୍ଟକ୍ଲାସ୍ ଫାଷ୍ଟ ହୋଇ ମଧ୍ୟ ଚାକିରିଟିଏ ପାଇପାରି ନାହିଁ। ତା' ଉପରେ ଗଣ୍ଡା ଗଣ୍ଡା ଫାଷ୍ଟକ୍ଲାସ୍ ଫାଷ୍ଟ ବସି ରହିଛନ୍ତି। ଅଧ୍ୟାପକ ଚାକିରିଟିଏ ପାଇବାକୁ ହେଲେ ତାକୁ ମିନିମମ୍ ପି.ଏଚ୍.ଡି କରିବାକୁ ପଡ଼ିବ ବୋଲି ସେ ଜୟନ୍ତବାବୁଙ୍କୁ ଜଣାଇଛି। ଜୟନ୍ତବାବୁ ପିଲାମାନଙ୍କ ପାଠ ପଢ଼ାକୁ ଖୁଣ୍ଟା ଦେଇ ସାଂପ୍ରତିକ ଭାରତର ଦୁର୍ନୀତିଗ୍ରସ୍ତ ଡିଗ୍ରୀ ସର୍ବସ୍ୱ ଚାକିରିକୁ ବିରୋଧ କରିବା ସହିତ ତାଙ୍କ ସମୟର ବ୍ରିଟିଶ୍ ସିଷ୍ଟମ୍‌ର କାର୍ଯ୍ୟଦକ୍ଷତାକୁ ପ୍ରଶଂସା କରିଛନ୍ତି।

ବ୍ରିଟିଶ୍ ଶାସନ ଅପେକ୍ଷା ବର୍ତ୍ତମାନର ମୂଲ୍ୟବୋଧ ହୀନ ଭାରତୀୟ ଶାସନ କିଭଳି ଅଧିକ ମାରାତ୍ମକ ଓ ଦୟନୀୟ ତା'ର ଆଉ ଏକ ପ୍ରମାଣ ଦିଏ ଭାରତୀୟ ଉଚ୍ଚ ପ୍ରଶାସକମାନଙ୍କର ସ୍ଖଳିତ ଚରିତ୍ର। ଆଇ.ଏ.ଏସ୍ ଚାକିରି ପ୍ରତି ବିମୁଖ ହୋଇ ସୁବ୍ରତ ତା'ର ପିତାଙ୍କୁ କହେ– "ବିଲାତି କୁକୁରଙ୍କୁ ରାସ୍ତାକୁ ଛାଡ଼ିଦେଲେ କ'ଣ ଦଶା ହୁଏ ତାଙ୍କର ଜାଣିଚଟି ବାପା! ବିଲାତି ଲୋକେ କୁକୁର ପାଳିଥିଲେ। ସେମାନେ ଚାଲିଗଲେ। ରହିଗଲେ କୁକୁରମାନେ। ଘର ଛାଡ଼ି ରାସ୍ତାରେ ବୁଲିଲେ। ସ୍ୱାଧୀନତାରୁ ଏତିକି ଲାଭ ହେଲା। ଏଇଲେ ଦେଶରେ ଦେଶୀ କୁକୁରଙ୍କ ଛୁଆମାନେ

ବିଲାତି କୁକୁରଙ୍କ ଭଳି ଦିଶୁଛନ୍ତି ସିନା; କିନ୍ତୁ ବିଲାତି କୁକୁର ଘୁଅ ଖାଉ ନ ଥିଲେ । ଏମାନେ ସମସ୍ତେ ଘୁଅ ଖାଉଛନ୍ତି ।"[୧୫]

ସ୍ୱାଧୀନତା ପ୍ରାପ୍ତି ପରେ ଇଂରେଜମାନଙ୍କୁ ଅନ୍ଧାନୁକରଣ କରି ଯେଉଁ ସ୍ୱଦେଶୀମାନେ ଦେଶର ପ୍ରଶାସନିକ ଅଫିସର ସାଜିଛନ୍ତି ସେମାନଙ୍କ ମଧ୍ୟରୁ ଅନେକ ଇଂରେଜମାନଙ୍କ ପରି ଦୁର୍ନୀତିମୁକ୍ତ ନ ହୋଇ ଦୁର୍ନୀତିଗ୍ରସ୍ତ ହୋଇଛନ୍ତି । ଶିକ୍ଷା, ଚାକିରି ପରି ପ୍ରତ୍ୟେକ କ୍ଷେତ୍ର ଆତ୍ମ ସ୍ୱାର୍ଥ ନୀତିରେ କଳୁଷିତ ହୋଇଛି । ଭାରତର ମେଧାଶକ୍ତି, ଯୁବଶକ୍ତି ସେମାନଙ୍କ ପ୍ରବଞ୍ଚନାର ଶିକାର ହୋଇ ଅସହ୍ୟ ମାନସିକ ଯାତନା ଭୋଗ କରିବା ସହିତ ଭାରତର ସ୍ୱାଧୀନତା ପ୍ରତି ଅସହିଷ୍ଣୁ ହୋଇଉଠିଛନ୍ତି । ଜାତୀୟ ସଙ୍ଗୀତ ସେମାନଙ୍କ ପାଇଁ ଔତ୍ସୁକତାହୀନ ପୋଲିସ ବା ୟୁନିଫର୍ମ ଗୀତ ହୋଇଥିବା ବେଳେ ଜାତୀୟ ଦିବସ ଏକ ଆଳସ୍ୟ ଦିବସରେ ପରିଣତ ହୋଇଛି । ଜାତି ପ୍ରୀତିର ବାହ୍ୟାଡ଼ମ୍ବର ସ୍ୱରୂପ ଅଗଷ୍ଟ ପନ୍ଦର ପାଳନ ପ୍ରତି ଜନସାଧାରଣଙ୍କ ବିଶ୍ୱାସ ତୁଟିଯାଇଛି । ଜନତାଙ୍କ ମନରେ ଅବିଶ୍ୱାସ ନିବିଡ଼ ଭାବେ ବସା ବାନ୍ଧିଛି । ଏମିତିକି ରାଜନୈତିକ ପ୍ରତାରଣାର ଆଶଙ୍କାରେ ଯୁବସମାଜ ନିଜର ଘରୋଇ କାର୍ଯ୍ୟକୁ ମଧ୍ୟ ସନ୍ଦେହ ଦୃଷ୍ଟିରେ ଦେଖୁଛି । ଜୟନ୍ତବାବୁଙ୍କ ପିଲାମାନେ ସେମାନଙ୍କ ମା'ଙ୍କର ଫୁଲଫଳ ଛୋଟ ଉଦ୍ୟାନଟିକୁ ସରକାରଙ୍କ ବିଂଶସୂତ୍ରୀ ପ୍ରୋଗ୍ରାମ୍ ବୋଲି ଆକ୍ଷେପ କରିଛନ୍ତି । ମାଆଙ୍କର ଉଦ୍ୟାନ କାର୍ଯ୍ୟକୁ ବେଶୀ ବିରୋଧ କରେ ସୁଖ୍ୟାତ । ତା' ମତରେ– "ଏ ସହରରେ ଗଜରାଫୁଲମାଳ ବେଶୀ କିଏ ପିନ୍ଧେ କହିଲ ମା' ? ଚୋରମାନେ–ଯିଏ ଉଡ଼ାଜାହାଜରୁ ଓହ୍ଲାନ୍ତି କି ଉଡ଼ାଜାହାଜକୁ ଉଠନ୍ତି । ଗଦା ଗଦା ଫୁଲମାଳ ତାଙ୍କରି ମୋଟ ବେକ ପାଇଁ ନିଅଣ୍ଟ । ସେଠୁ ଯାହା ବଞ୍ଚେ ସେତେକ ଲାଗି ହୁଏ ଆଉ ଚୋରଙ୍କ ବେକରେ–ତମରି ସେ ଚୋର ଠାକୁର ପଞ୍ଚାକ, ଖଟୁଲିରେ ବସି ଦିନରାତି ଢୁଳୋଉଥା'ନ୍ତି ଯୋଉମାନେ ।"[୧୬]

ବାୟୁଯାନ ବାହନର ଫୁଲମାଳ ପିନ୍ଧା ଚୋର ହେଉଛନ୍ତି ଦୁର୍ନୀତିଗ୍ରସ୍ତ ରାଜନୈତିକ ନେତା । ସେମାନେ ଖଦଡ଼ଲୁଗା, ଗାନ୍ଧିଟୋପି ପିନ୍ଧି ମୁହଁରେ ଭାରତମାତା ଓ ଗାନ୍ଧିଙ୍କର ଜୟଗାନ ପୂର୍ବକ ସାଧାରଣ ଭାରତୀୟମାନଙ୍କୁ ପ୍ରତାରିତ କରନ୍ତି । ପ୍ରବଞ୍ଚକ ନେତାମାନଙ୍କ ଯୋଗୁଁ ପବିତ୍ର ଭାରତମାତା ଓ ଜାତିର ପିତା ମହାତ୍ମାଗାନ୍ଧି

ସାଧାରଣରେ କଳଙ୍କିତ ହୋଇଉଠନ୍ତି । ସେହିପରି ଭାରତୀୟ ଜନତାଙ୍କ ବିଶ୍ୱାସର ପ୍ରତୀକ ଦେବ ପ୍ରତିମା ପୂଜାର ସୁବିଧା ନେଇ ସ୍ୱାର୍ଥାନ୍ୱେଷୀ ନେତାମାନେ ହୋମ, ଯଜ୍ଞ, ମେଳା, ମହୋତ୍ସବ, ମନ୍ଦିର ନିର୍ମାଣ ଆଦି ଧର୍ମ କାର୍ଯ୍ୟ ପ୍ରକାରାନ୍ତରେ ସାଧାରଣ ଲୋକଙ୍କୁ ଶୋଷଣ କରନ୍ତି । ଠାକୁର ମଧ୍ୟ ଏମାନଙ୍କ ଦ୍ୱାରା ଚୋର ରୂପେ ପରିଚିତ ହୁଅନ୍ତି । ସୁଖ୍ୟାତର ଏଭଳି କଥାରେ ତା'ର ଧର୍ମପ୍ରାଣା ମା' ବିରକ୍ତ ହେଲେ ମଧ୍ୟ ହସିଦିଅନ୍ତି । ସୁଖ୍ୟାତ ଯୋଗୁଁ ଛତରା ପିଲାଙ୍କ ଦାଉରୁ ତାଙ୍କର ବୟଃପ୍ରାପ୍ତ କନ୍ୟାଟି ନିରାପଦରେ ରହିପାରେ । ଯାହାଫଳରେ ତାଙ୍କର ଏକ ବଡ଼ ଭୟ ଦୂର ହୁଏ । ନାରୀ ନିର୍ଯାତନାର କୁତ୍ସିତ ରୂପକୁ ଏହା ଇଙ୍ଗିତ କରେ ।

ଜାତୀୟ ସ୍ତରରେ ଓଡ଼ିଆମାନଙ୍କ ପ୍ରତି ଯେଉଁ ଅବଜ୍ଞା ପ୍ରକାଶ ପାଇଛି ତାହା ସୁଦେଷ୍ଣା କାହିଁକି ଯେ କୌଣସି ଓଡ଼ିଆଙ୍କୁ ମଧ୍ୟ ଅସହିଷ୍ଣୁ କରିବ । ରେଡିଓ ଓଡ଼ିଆ କବିଙ୍କ ସଙ୍ଗୀତକୁ ଉପେକ୍ଷା କରି ରବୀନ୍ଦ୍ର ସଙ୍ଗୀତକୁ ବରାବର ପରିବେଷଣ କରିଥିବାରୁ ସେ ବିରକ୍ତି ପ୍ରକାଶ କରିଛି ।

ଜାତୀୟ କବି, ନେତା, ସଙ୍ଗୀତ ପ୍ରତି ଦେଶର ଯୁବଶକ୍ତିର ଯେଉଁ ବିତୃଷ୍ଣା ଜାତ ହୋଇଛି ସେଥିପାଇଁ କେତେକ କ୍ଷମତାସୀନ ସ୍ୱାର୍ଥାନ୍ଧ ବ୍ୟକ୍ତି ହିଁ ଦାୟୀ । ଏମାନେ ଦେଶର ଯୁବଶକ୍ତିକୁ ପଙ୍ଗୁ ଅଥର୍ବ କରି ଦେବାକୁ ସଦା ଚେଷ୍ଟିତ ଏବଂ ସେମାନଙ୍କ ଯୋଗୁଁ ଜାତୀୟ ଦିବସ ଜାତୀୟ ଯୁବଶକ୍ତିର କବର ଦିବସ ରୂପେ ରୂପାନ୍ତରିତ ହୁଏ । ଅପମିଶ୍ରିତ ତେଲର ଚାଟ୍ ଖାଇ ପାରାଲିସିସ୍ ରୋଗୀ ରୂପେ ଜୟନ୍ତବାବୁଙ୍କ ପୁଅଝିଅ ସହିତ ପ୍ରାୟତଃ ଦେଢ଼ଶହ ଯୁବକ, ଯୁବତୀ ଅଗଷ୍ଟ ପନ୍ଦର ଦିନ ମେଡିକାଲକୁ ବୁହା ହୋଇଛନ୍ତି । ମେଡିକାଲର ପରିସରରେ ଆର୍ତ୍ତ ଚିତ୍କାର ଶୁଭୁଥିବାବେଳେ ଡାକ୍ତରମାନେ କ୍ୱାର୍ଟରରେ ଅଗଷ୍ଟ ପନ୍ଦର ଛୁଟିରେ ଆତ୍ମବିଭୋର ଥା'ନ୍ତି । ଅପମିଶ୍ରିତ ତେଲର କୋକୁଆ ଭୟରେ ସାଧାରଣ ଜନତା ସେମାନଙ୍କର କର୍ତ୍ତବ୍ୟ ଜ୍ଞାନ ହରାଉଥା'ନ୍ତି । ଜୟନ୍ତବାବୁଙ୍କ ଘର ଉପରେ ସକାଳେ ତାଙ୍କ ସ୍ତ୍ରୀ ବାନ୍ଧିଥିବା ପତାକାଟି ସନ୍ଧ୍ୟାରେ ପୂର୍ବବତ୍ ଉଡୁଥାଏ । ରାତ୍ରି ଆସିବା ପୂର୍ବରୁ ରାଷ୍ଟ୍ରୀୟ ମର୍ଯ୍ୟାଦା ଦୃଷ୍ଟିରୁ ଓହ୍ଲାଇ ଦେବାକୁ କାହାରି ଆଖିକୁ ଦିଶୁ ନ ଥାଏ । ପରିଣତିରେ ସ୍ୱାର୍ଥାନ୍ଧ ସ୍ୱଦେଶୀଙ୍କ ଯୋଗୁଁ ଅମୂଲ୍ୟ ରାଷ୍ଟ୍ରୀୟ ପତାକା ମଧ୍ୟ ଉପହସିତ ହୋଇଛି ।

ଚଳନ୍ତି ଠାକୁର ଗ୍ରନ୍ଥର ଗଳ୍ପଗୁଡ଼ିକରେ ପ୍ଲଟ୍ ଓ ଥିମ୍ ଉଭୟର ଗୁରୁତ୍ୱ ପ୍ରକାଶ ପାଇଛି । ଏସବୁ ଗଳ୍ପର ପରିବେଶ ଗାମ୍ଭୀର୍ଯ୍ୟମୟ, ପ୍ରବାହ ଉତ୍କଣ୍ଠାପୂର୍ଣ୍ଣ ଓ ପରିଣତି ଜିଜ୍ଞାସିତ ହୋଇଛି ।

**ଅନ୍ତଟୀକା :**


୧. ଶାନ୍ତନୁ କୁମାର ଆଚାର୍ଯ୍ୟ–ଚଳନ୍ତି ଠାକୁର, ପୃ.୨୭ ।
୨. ତତ୍ରୈବ, ପୃ.୨୮ ।
୩. ତତ୍ରୈବ, ପୃ.୩୦ ।
୪. ତତ୍ରୈବ, ପୃ.୧୯ ।
୫. ତତ୍ରୈବ, ପୃ.୩୪ ।
୬. ତତ୍ରୈବ, ପୃ.୩୮ ।
୭. ତତ୍ରୈବ, ପୃ.୪୧ ।
୮. ତତ୍ରୈବ, ପୃ.୫୦ ।
୯. ତତ୍ରୈବ, ପୃ.୬୧ ।
୧୦. ତତ୍ରୈବ, ପୃ.୬୭ ।
୧୧. ତତ୍ରୈବ, ପୃ.୭୫ ।
୧୨. ତତ୍ରୈବ, ପୃ.୮୬-୮୭ ।
୧୩. ତତ୍ରୈବ, ପୃ.୯୧-୯୨ ।
୧୪. ତତ୍ରୈବ, ପୃ.୯୯
୧୫. ତତ୍ରୈବ, ପୃ.୧୦୫ ।
୧୬. ତତ୍ରୈବ, ପୃ.୧୦୩ ।




# ଚରିତ୍ର ଚିତ୍ରଣ

ଗଳ୍ପର ଚରିତ୍ର ଗାଳ୍ପିକର ମୁଖପାତ୍ର । ଯାହାଦ୍ୱାର ଗାଳ୍ପିକର କଥା ଓ ବ୍ୟଥା ହୁଏ ଆଭାଷିତ । ଗାଳ୍ପିକ ନିଜର ଅଭିମତ ପୋଷଣ ନିମନ୍ତେ ପ୍ରତ୍ୟକ୍ଷ ବା ପରୋକ୍ଷ ଶୈଳୀକୁ ଆଶ୍ରୟ କରେ । ପ୍ରତ୍ୟକ୍ଷ ଶୈଳୀରେ ଗାଳ୍ପିକ ଆପେ ହୁଏ ଆପଣାର ମୁଖପାତ୍ର । କିନ୍ତୁ ପରୋକ୍ଷ ଶୈଳୀରେ ସ୍ୱୀୟ ବ୍ୟକ୍ତି ସତ୍ତାର ପ୍ରତିପାଦନ ନିମିତ୍ତ ଗାଳ୍ପିକ ଅପର ଚରିତ୍ରର ଆଶ୍ରିତ ହୁଏ । ସ୍ୱକୀୟ ଅନୁଭୂତି ଓ ଅନୁମିତି ପରିଧିରୁ ଗାଳ୍ପିକ କରେ ଚରିତ୍ରର ସନ୍ଧାନ । ସନ୍ଧାନୀ ଦୃଷ୍ଟି ତା'ର ଘୂରିବୁଲେ ମର୍ତ୍ତ୍ୟରୁ ସ୍ୱର୍ଗ ଏବଂ ଧରିଆଣେ ମାନବେତରରୁ ମାନବୋତ୍ତର ଆଦି ବାସ୍ତବ ଓ କଳ୍ପିତ ଅସୁମାରି ଚରିତ୍ର । ଚରିତ୍ରମାନଙ୍କ ସ୍ୱତଃ ପ୍ରବୃତ୍ତିକୁ ପ୍ରବର୍ତ୍ତିତ କରି ଜୀବନ ସତ୍ୟର ଉଦ୍‌ଘାଟକ ହେବା ଗାଳ୍ପିକର ବୈଶିଷ୍ଟ୍ୟ । ଜୀବନ୍ତ ଚରିତ୍ର ଚିତ୍ରଣ ଦ୍ୱାରା ଗଳ୍ପ ରଚନା ସ୍ୱାଭାବିକ ଓ ସରସ ସୁନ୍ଦର ହୁଏ । ଗାଳ୍ପିକର ସିଦ୍ଧି ନିର୍ଭର କରେ ଗଳ୍ପ ଉପଯୋଗୀ ଚରିତ୍ର ନିର୍ବାଚନ ଓ ତା'ର ମାନସିକ କ୍ରିୟାପ୍ରତିକ୍ରିୟାର ଯଥାଯଥ ପ୍ରଦର୍ଶନ ଉପରେ । ଏହି ପରିପ୍ରେକ୍ଷୀରେ ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟଙ୍କ ବୈଶିଷ୍ଟ୍ୟ ତାଙ୍କ ଗଳ୍ପ ସଂକଳନ 'ଚଳନ୍ତି ଠାକୁର'ର ଚରିତ୍ର ଚିତ୍ରଣରୁ ଅବଧାରଣ କରାଯାଇପାରେ ।

ଶାନ୍ତନୁ ଆଚାର୍ଯ୍ୟ ଚରିତ୍ରମାନଙ୍କୁ ଆହରଣ କରିବା ପାଇଁ ଆୟାସକର ଅନ୍ୱେଷଣ କରନ୍ତି ନାହିଁ ବରଂ ସେମାନେ ଅନାୟାସରେ ତାଙ୍କ ନିକଟରେ ଆତ୍ମସମର୍ପଣ କରନ୍ତି । ସେ ତାଙ୍କର ସଂପର୍କୀୟମାନଙ୍କ ଗହଣରୁ ବା କର୍ମମୟ ଜୀବନଯାତ୍ରାର ଚଲାପଥରୁ ଚରିତ୍ରମାନଙ୍କୁ ସନ୍ଧାନ କରି ସାରସ୍ୱତ ସାମ୍ରାଜ୍ୟ ଗଢ଼ନ୍ତି । ଏତଦ୍ ଭିନ୍ନ

ସେ ତାଙ୍କ ମନୋରାଜ୍ୟର ଚରିତ୍ରମାନଙ୍କ ସହାୟତା ଲୋଡ଼ନ୍ତି । ଉକ୍ତ ଚରିତ୍ରମାନେ ଅଲୌକିକ ପରି ମନେ ହେଲେ ମଧ୍ୟ ତାଙ୍କର ସ୍ରଷ୍ଟାସୁଲଭ କଳାକୌଶଳରେ ଲୌକିକ ରୂପ ଧାରଣ କରିଥାନ୍ତି । ତାଙ୍କର କମନୀୟ କଳା ମୂଲ୍ୟ ନିହିତ କୃତିରେ କଳ୍ପିତ ଏପରିକି ଅତିକଳ୍ପିତ ବା ଫାଣ୍ଟାସି ଚରିତ୍ରମାନଙ୍କ ସହ ବାସ୍ତବ ଚରିତ୍ରର ସୁସମନ୍ୱୟ ହେବା ଫଳରେ ଚିରନ୍ତନ ମାନବୀୟ ସତ୍ୟର ସମୁତ୍ପନ୍ନ ସମ୍ଭବ ହୋଇଛି । ସତ୍ୟାନୁସନ୍ଧାନୀ ମାନବବାଦୀ ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟ ପ୍ରାସାଦ ନିବାସୀ ଅହଂକାରୀ ଜନତାର ଅବ୍ୟକ୍ତ ବେଦନାକୁ ସହିଷ୍ଣୁତାର ସହ ବ୍ୟକ୍ତ କରିବା ବେଳେ ପାଦପ ପାଦଦେଶୀ ନିରହଂକାରୀ ଜନତାର ଅସହ୍ୟ ବେଦନାକୁ ସହୃଦୟ ସଖ୍ୟ ପ୍ରଦାନ କରିଛନ୍ତି । ଏହାର ସାକ୍ଷ୍ୟ ପ୍ରଦାନ କରେ ଗାଳ୍ପିକ ଶାନ୍ତନୁଙ୍କ ବର୍ଣମୂଳକର ଗଳ୍ପ ସଂକଳନ 'କରଞ୍ଜିଆ ଡାଏରୀ' । ଓଡ଼ିଆ ସାହିତ୍ୟରେ ଗୋପୀନାଥ ମହାନ୍ତିଙ୍କ ପରେ ଶାନ୍ତନୁ ଆଚାର୍ଯ୍ୟ ହେଉଛନ୍ତି ଦ୍ୱିତୀୟ ବ୍ୟକ୍ତି ଯିଏ ସାଧାରଣ ଏପରିକି ଅତି ସାଧାରଣ ମାନବ ସହିତ ନିବିଡ଼ ବନ୍ଧୁତ୍ୱ ସ୍ଥାପନ କରିବାକୁ ତିଳେ ହଲେ ବିତୃଷ୍ଣା ପ୍ରକାଶ କରିନାହାଁନ୍ତି । ବନାନୀରୁ ନଗରୀ ମଧ୍ୟରେ ଆତଯାତ ହେଉଥିବା ସାଧାରଣ ଓ ଅସାଧାରଣ ମାନବକୁ ନେଇ ସେ ତାଙ୍କ ସୃଷ୍ଟି ସର୍ଜନା କରିଛନ୍ତି । ଚଳନ୍ତି ଠାକୁର ଗଳ୍ପ ସଂକଳନରେ ବନାନୀ ଜନତାର ଚିତ୍ର ଅମୂର୍ତ୍ତ ହେଲେ ମଧ୍ୟ ପଲ୍ଲୀ ଓ ନଗରୀ ଜନତାର ଆଲେଖ୍ୟ ପ୍ରମୂର୍ତ୍ତ । ଗ୍ରାମର କୃଷିକାରୀଠାରୁ ଆରମ୍ଭ କରି ସହରର ଉଚ୍ଚ ପ୍ରଶାସନିକ ଅଫିସର, ନରରୁ ନାରୀ, ଶିଶୁରୁ ବୃଦ୍ଧ ଚରିତ୍ରମାନଙ୍କ ଚାଲିଚଳଣି, ଚିନ୍ତାଚେତନାକୁ ଭିତ୍ତି କରି ଚଳନ୍ତି ଠାକୁର ଗଳ୍ପ ସଂକଳନ ସାର୍ଥକତା ଲାଭ କରିଛି । ପ୍ରଥମେ ଗ୍ରାମୀଣ ଓ ସହରୀ ପୁରୁଷଙ୍କ ଚରିତ୍ର ଚିତ୍ରଣର ଉଦାହରଣ ନିଆଯାଇପାରେ ।

## ପୁରୁଷ ଚରିତ୍ର

ପିତୃଋଣ ଗଳ୍ପର ନାୟକ ବୀର ସାଆଁନ୍ତରା ହେଉଛି ଅଖ୍ୟାତ ପଲ୍ଲୀ ଘଡ଼ିମୂଳ ଗ୍ରାମର ଦୁର୍ଦାନ୍ତ ବ୍ୟକ୍ତି କ୍ଷୀର ସାଆଁନ୍ତରାର ପୁତ୍ର । କ୍ଷୀର ସାଆଁନ୍ତରାର ମୃତ୍ୟୁ ଅନ୍ତେ ଗ୍ରାମବାସୀ ତା'ର ଦୁଷ୍କର୍ମ ନିମନ୍ତେ ବୀରସାଆଁନ୍ତରା ପ୍ରତି ପ୍ରତିଶୋଧ ପରାୟଣ ହୁଅନ୍ତି । ବୀର ସାଆଁନ୍ତରା ତା'ର ପିତା ପରି ହୁଣ୍ଡା କି ଗୁଣ୍ଡା ନୁହେଁ । ସେ ହେଉଛି ଦରିଦ୍ର, ସରଳ ଓ ସହିଷ୍ଣୁ କିଶୋର । କିନ୍ତୁ ଗ୍ରାମବାସୀଙ୍କ ମନର ପ୍ରତିଶୋଧ ବହ୍ନି

ସହଜରେ ନିର୍ବାପିତ ହୁଏ ନାହିଁ। ସୁଭଦ୍ରା ନାମ୍ନୀ ବାଳୁତ ବିଧବାର ପାପଗର୍ଭ ନିମନ୍ତେ ଗ୍ରାମବାସୀ ନିର୍ଦ୍ଦୋଷ ବୀରକୁ ଦାୟୀ କରି ତାକୁ ବନ୍ୟା ବିକ୍ଷୁବ୍ଧ ନଦୀ ଗର୍ଭକୁ ଫିଙ୍ଗି ଦେଇଛନ୍ତି। ସୁଭଦ୍ରା ଦ୍ୱାରା ବୀର ଉଦ୍ଧାର ହୋଇ କଲିକତା ନଗରୀରେ କୁଲି କାମ କରିଛି। କଲିକତା ମାଟିରେ ସୌଭାଗ୍ୟ ଲକ୍ଷ୍ମୀ ତା' ପ୍ରତି ସୁପ୍ରସନ୍ନ ହୋଇଛନ୍ତି। ସେ କୁଲିରୁ କୋଟିପତି ହୋଇଛି। ଧନୀ ଓ ପ୍ରତିପତ୍ତିଶାଳୀ ବୀର ସାଆଁନ୍ତରା ଗ୍ରାମବାସୀଙ୍କ ପ୍ରତି ପ୍ରତିହିଂସା ପରାୟଣ ହେବା ପରିବର୍ତ୍ତେ ସେମାନଙ୍କ ତଥା ନିଜ ଜନ୍ମଭୂମିର ପ୍ରଗତି ପାଇଁ ମୋଟାଅଙ୍କର ଧନରାଶି ଦାନ କରିଛି। ବୀର ସାଆଁନ୍ତରା ବାସ୍ତବରେ ଉଦାର ହୃଦୟବାନ, ପ୍ରଗତିବାଦୀ ଓ ମାତୃଭୂମି ପ୍ରେମୀ ଚରିତ୍ରର ପରିଚାୟକ।

ପ୍ରତିକ୍ରିୟା ପରିବର୍ତ୍ତେ ସହୃଦୟତା ନିକଟରେ ଶତ୍ରୁ ହିଁ ମିତ୍ର ହୁଏ। ଏହାର ପ୍ରମାଣ ଦିଏ ପ୍ରେମର ପ୍ରମାଣ ଗଳ୍ପର ମୁଖ୍ୟ ଚରିତ୍ର ବଳଭଦ୍ର। ଚାକିରିରୁ ଅବସର ନେଇ ବହୁବର୍ଷ ବ୍ୟବଧାନରେ ସେ ସ୍ୱଗ୍ରାମକୁ ଫେରିଛନ୍ତି। ତାଙ୍କ ପିଲାଦିନର କଦମ୍ବ ବୃକ୍ଷ ମୂଳରେ ବସି ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରୁଥିବା ସମୟରେ ଗ୍ରାମର ଯୁବକମାନେ ତାଙ୍କୁ କାମୁକ ଭାବି ଢେଲା ମାରିଛନ୍ତି। ବୃଦ୍ଧ ବଳଭଦ୍ର ଢେଲା ମାରିଥିବା ଯୁବକକୁ ସ୍ନେହରେ କୋଳେଇ ନେବାରୁ ଯୁବକମାନେ ତାଙ୍କର ସାଥୀ ହୋଇଯାଇଛନ୍ତି। ବଳଭଦ୍ର ତାଙ୍କ ପିଲାଦିନେ ସେହି ସାଧୁ ବୃକ୍ଷରେ ଶ୍ରୀକୃଷ୍ଣଙ୍କୁ ଦେଖିଥିବା କଥା କହିବାରୁ ଯୁବକମାନଙ୍କର ତାହା ବିଶ୍ୱାସ ହୋଇନାହିଁ। ତାଙ୍କର ଶାଶ୍ୱତ ପ୍ରେମ କଥାକୁ ଯୁବକମାନେ ଅଶ୍ଳୀଳ ଭାବି ତାଙ୍କୁ ଉପହାସ କରିଛନ୍ତି। ବଳଭଦ୍ର ଯୁବକମାନଙ୍କୁ ନିଜର ପବିତ୍ରତା ସମ୍ବନ୍ଧରେ ବୁଝାଇ ନ ପାରି ଆତ୍ମନିର୍ଭରଶୀଳତା ଓ ଅହିଂସା ନୀତିର ଉପଦେଶ ଦେଇ ବୃଦ୍ଧାବସ୍ଥାରେ ପ୍ରେମିକାକୁ ସ୍ୱୀକାର କରିବାକୁ ପହଁରି ପହଁରି କେନାଲ ଆରପାରିକୁ ଯାଇଛନ୍ତି। ଗ୍ରାମୀଣ ଜୀବନାକାଙ୍କ୍ଷୀ ବଳଭଦ୍ରଙ୍କ ଚରିତ୍ରରୁ ଉଦାରତା ଓ ସ୍ୱାଧୀନତା ଭାବ ସହିତ ଗଭୀର ଶାଶ୍ୱତ ପ୍ରେମର ନିଦର୍ଶନ ମିଳେ।

ଶାଶ୍ୱତ ବା ଅପାର୍ଥିବ ପ୍ରେମକୁ ତ୍ୟାଗକରି ପାର୍ଥିବ ପ୍ରେମକୁ ଧ୍ୟେୟ କଲେ ଅଶେଷ ଦୁଃଖଯନ୍ତ୍ରଣା ଭୋଗ କରିବାକୁ ପଡ଼େ। ଏହି ଦୃଷ୍ଟିକୋଣରେ ମାଟିର ସ୍ୱପ ଗଳ୍ପର ମଦନ ପାତ୍ର ଚରିତ୍ର କଳ୍ପିତ। ମଦନ ପାତ୍ର ଜଣେ ଦରିଦ୍ର କୃଷକ।

ସମୁଦ୍ରବେଳାରୁ ମୂଲ୍ୟବାନ ମାଦକ ହିରଇନ୍ ମୁଣ୍ଡା ପାଇ ତାକୁ ଚିହ୍ନି ନ ପାରିବାରୁ ଯୁବକମାନେ ଛଡ଼ାଇ ନେଇଛନ୍ତି । ଲକ୍ଷ୍ମୀ ଠାକୁରାଣୀଙ୍କ ନିକଟରେ ସମୁଦ୍ର ବେଳାରେ ଅଧିଆ ପଡ଼ି ପୁଣି ବର୍ଷକ ମଧ୍ୟରେ ନିଜ କ୍ଷେତରେ ପୋତାମାଲର ସନ୍ଧାନ ପାଇଛନ୍ତି । ପୋତାଧନ ପାଇ ପାତ୍ରେ କେତେ କ'ଣ ଏପରିକି ଭାରତର ପ୍ରଥମ ଓଡ଼ିଆ ପ୍ରଧାନମନ୍ତ୍ରୀ ହେବାର ସ୍ୱପ୍ନ ଦେଖିଛନ୍ତି । ଗ୍ରାମବାସୀମାନେ କୌଣସି ସୂତ୍ରରୁ ଖବର ପାଇ ପାତ୍ରେଙ୍କ ସହିତ ତାଙ୍କ ପରିବାରକୁ ଗକ୍ତାକ୍ତ କରି ପୋତାମାଲକୁ ବୋହି ନେଇଛନ୍ତି । ପ୍ରତ୍ୟକ୍ଷରେ ପାତ୍ରଙ୍କର ପୋତାମାଲ ବା ପରଧନ ପ୍ରତି ଲୋଲୁପତା କଥିତ ହେବା ସହିତ ପରୋକ୍ଷରେ ତାଙ୍କ କର୍ମକାତରତାକୁ ବିଦ୍ରୂପ କରାଯାଇଛି । ପୁନଶ୍ଚ ପୋତାମାଲ ବିନିମୟରେ ପ୍ରଥମ ଓଡ଼ିଆ ପ୍ରଧାନମନ୍ତ୍ରୀ ହେବାରେ ଯେଉଁ ଓଡ଼ିଆ ପ୍ରୀତି କଥା କୁହାଯାଇଛି, ତାହା ତାଙ୍କ ଆତ୍ମସ୍ୱାର୍ଥ ସର୍ବସ୍ୱ ଏବଂ ଦୁର୍ନୀତିଗ୍ରସ୍ତ ବ୍ୟକ୍ତିତ୍ୱର ପରିଚୟ ଦିଏ ।

ସ୍ୱାର୍ଥପର ବ୍ୟକ୍ତି ନେତା ହେଲେ ଦେଶର ଅବସ୍ଥା କ'ଣ ହୁଏ, ଏହାର ପ୍ରତ୍ୟୁତ୍ତର ଦିଏ ବୃକ୍ଷସାକ୍ଷୀ ଗଳ୍ପର ଖଳନାୟକ ଚନ୍ଦ୍ରମଣି ଭୋଇ । ସି ଅକ୍ଷର ବିବର୍ଜିତ ଚନ୍ଦ୍ରମଣି ବିଦ୍ୟାଳୟରେ ଛାତ୍ରାବସ୍ଥାରୁ ଥିଲା ଚରିତ୍ରହୀନ । ଯାହାର ପ୍ରମାଣ ଦିଏ ତା'ର ସହପାଠିନୀ ପେମିର ତାକୁ କାନମୋଡ଼ା ଓ ଚଟକଣା । ପର ସମୟରେ ସେ ପେମିର ପୁନଃବିବାହ ପ୍ରସ୍ତାବଗୁଡ଼ିକୁ ଭଣ୍ଡୁର କରିଛି । ଏହି ହୀନମଣ୍ୟ ପରଶ୍ରୀକାତର ବ୍ୟକ୍ତି ପରିଶେଷରେ ଗ୍ରାମର ସରପଞ୍ଚ ହୋଇଛି । ନିଜର ରାଜନୈତିକ ସ୍ୱାର୍ଥସିଦ୍ଧି ନିମନ୍ତେ ଗ୍ରାମୀଣ ନାରୀମାନଙ୍କ ଦାରିଦ୍ର୍ୟ ଓ ସରଳତାର ସୁଯୋଗ ନେଇ ସେମାନଙ୍କୁ ସେ କଲିକତାର ନାରୀ ସମ୍ମିଳନୀକୁ ସାଥୀରେ ନେଇଛି । ପେମିକୁ କଲିକତାର ହାଡ଼କଟା ଗଳିରେ ଛାଡ଼ିଦେଇ ଚନ୍ଦ୍ରମଣି ଗ୍ରାମକୁ ଫେରିଛି । ପେମି ହାବୁଡ଼ାପୋଲରୁ ଡେଇଁପଡ଼ି ଆତ୍ମହତ୍ୟା କରିଛି ବୋଲି ସେ ଗ୍ରାମବାସୀଙ୍କୁ ସଫେଇ ଦେଇଛି । କିନ୍ତୁ ସତ୍ୟ କେବେ ଲୁଚି ରହେନା । ଉକ୍ତ ଘଟଣାର ପାଞ୍ଚବର୍ଷ ପରେ ଗ୍ରାମର ଖଜୁରି ଗଛକୁ ପେମିର ଭୂତ ଲାଗିଛି । ଏ ଖବର ପାଇ ଚନ୍ଦ୍ରମଣି ଭୁବନେଶ୍ୱରରୁ ଧାଇଁ ଆସିଛି । ଏଥିମଧ୍ୟରେ ସେ ସରପଞ୍ଚରୁ ହୋଇଛି ବଡ଼ ନେତା ଓ ଭୁବନେଶ୍ୱରର ବଡ଼ କୋଠାରେ ଚାଲେ ତା'ର ଅଫିସ୍ । ଏଭଳି ସ୍ୱାର୍ଥାନ୍ଧ ରାଜନୈତିକ ନେତାମାନେ କରାଣ୍ଡି ଥୋପ ଦେଇ ବାଲିଆ ମାଛ ଧରିବାରେ ବେଶ୍ ଧୂର୍ତ୍ତ । ଚନ୍ଦରା ବାଉରୀ

ଗ୍ରାମକୁ ପିଚୁରାସ୍ତା, ପାଣିକଳ, ବିଜୁଳିବତୀର ସୁବିଧା କରାଇଦେଇ ଲୋକମାନଙ୍କ ବିଶ୍ୱାସଭାଜନ ହୋଇଛି ଏବଂ ପରୋକ୍ଷରେ ସେମାନଙ୍କ ଦାନରେ ଗ୍ରାମର ସବୁଠାରୁ ଧନୀ ଓ ମାନୀ ବୋଲାଇଛି । ପାପୀର ମନକୁ ପାପ ଆପେ ଛୁଏଁ । ଏଥିପାଇଁ ଦ୍ୱିତୀୟ ବ୍ୟକ୍ତିର ଆବଶ୍ୟକ ହୁଏ ନାହିଁ । ଖଜୁରିଗଛକୁ ଯେମିର ଭୂତ ଲାଗିବା ଦେଖି ନିଜର ବିଗତ ପାପର ପ୍ରାୟଶ୍ଚିତକୁ ଚିନ୍ତାକରି ସେ ବିଚଳିତ ହୋଇପଡ଼ିଛି । ତା' ମନର ଅବଚେତନ ସ୍ତରରୁ ଦୁର୍ବୋଧ ଭାଷାର ବାଚାଳତା ପ୍ରକାଶ ପାଇଛି । ସେହି ଭାଷାକୁ ଭାଷା ଗବେଷଣାଗାରରେ ପରୀକ୍ଷା କରି ତା'ର ଅତୀତ ଦୁଷ୍କୃତିକୁ ସମ୍ବାଦପତ୍ରରେ ପ୍ରକାଶ କରାଯାଇଛି । ଚନ୍ଦ୍ରମଣି ଭୋଇ ଆଧୁନିକ ଗ୍ରାମୀଣ ଟାଉଟର, ମାମଲତକାର ଓ ଦୁର୍ନୀତିଗ୍ରସ୍ତ ରାଜନୈତିକ ନେତାମାନଙ୍କର ପ୍ରତିନିଧି ଶ୍ରେଣୀୟ ଚରିତ୍ର ରୂପେ ଚିତ୍ରିତ ।

ସାଂପ୍ରତିକ ଗ୍ରାମ୍ୟ ସମସ୍ୟାକୁ ଭିତ୍ତିକରି ଗାଳ୍ପିକ ଯେଉଁ କେତେକ ପୁରୁଷ ଚରିତ୍ରର ଉପସ୍ଥାପନ କରିଛନ୍ତି ସେଗୁଡ଼ିକ ଅତୀବ ହୃଦୟସ୍ପର୍ଶୀ ହୋଇପାରିଛି । ଗାଳ୍ପିକ ଗ୍ରାମ୍ୟ ଜନତା ଅନ୍ତରର ବ୍ୟଥା ବେଦନାକୁ ଯେଉଁଭଳି ହୃଦୟଙ୍ଗମ କରିଛନ୍ତି ସହରୀ ସମାଜର ଅସହାୟତାକୁ ଠିକ୍ ସେପରି ଉପଲବ୍ଧି କରିଛନ୍ତି । ପ୍ରସଙ୍ଗକ୍ରମେ ସହରୀ ସଭ୍ୟତାର ପ୍ରତିନିଧିତ୍ୱ କରୁଥିବା କେତୋଟି ପୁରୁଷ ଚରିତ୍ରକୁ ଆଲୋଚନା ପରିସରଭୁକ୍ତ କରାଯାଇପାରେ ।

ଦୁର୍ନୀତିଗ୍ରସ୍ତ ବ୍ୟକ୍ତିମାନଙ୍କ ହେତୁ କେବଳ ମଫସଲର ଜନତା ଯେ ବ୍ୟତିବ୍ୟସ୍ତ ତାହା ନୁହେଁ, ସହରର ଜନସାଧାରଣ ମଧ୍ୟ ଭୀତତ୍ରସ୍ତ । ଭାରତୀୟ ସ୍ୱାଧୀନତାପ୍ରାପ୍ତିର ସୁସ୍ୱପ୍ନ ଏମାନଙ୍କ ପାଇଁ ହୁଏ ଉପହସିତ । ସାଧାରଣ ଜନତା ହୃଦୟରେ ଜାତିପ୍ରୀତି ପ୍ରତି ଜାତ ହୁଏ ବୀତସ୍ପୃହତା । ଏହି ପୃଷ୍ଠଭୂମିରେ ଅଗଷ୍ଟ ପନ୍ଦର ଗଳ୍ପର ଜୟନ୍ତ ଚରିତ୍ର ବିଚାର୍ଯ୍ୟ । ସେ ସେକ୍ରେଟେରୀଏଟ୍‌ର ଡେପୁଟି ସେକ୍ରେଟେରୀ । ତାଙ୍କ ଠାରେ ଅବଶ୍ୟ ଜାତିପ୍ରୀତିର ଉଗ୍ରତା କିମ୍ବା ଉଦାସୀନତା ପରିଲକ୍ଷିତ ହୁଏ ନାହିଁ । ଅଗଷ୍ଟ ପନ୍ଦରର ପ୍ରାତଃ ମୁହୂର୍ତ୍ତରେ ଟି.ଭିରେ ଜାତୀୟ ସଙ୍ଗୀତ ଶୁଣିବାମାତ୍ରେ ଅନିଚ୍ଛା ସତ୍ତ୍ୱେ ବି ସେ ଆଟେନ୍‌ସନ୍ ପୋଜିସନ୍ ନେଇଛନ୍ତି ଏବଂ ନିଜର ପୁଅ ଝିଅମାନଙ୍କ ଜାତୀୟ ବିରୋଧୀ ମନୋଭାବକୁ ବିଶ୍ଳେଷଣ କରିଛନ୍ତି । ବର୍ତ୍ତମାନର ଡିଗ୍ରୀ ସର୍ବସ୍ୱ

ଶିକ୍ଷା ଆଉ ଚାକିରିକୁ ଘୃଣ୍ୟ ଦୃଷ୍ଟିରେ ଦେଖିବା ସହିତ ବ୍ରିଟିଶ ସିଷ୍ଟମ୍‌ରେ ପାଠ ଅପେକ୍ଷା କାର୍ଯ୍ୟଦକ୍ଷତାକୁ ନେଇ ଚାକିରି ପାଇବାର ପଦ୍ଧତିକୁ ସେ ପ୍ରଶଂସା କରିଛନ୍ତି । ସନ୍ତାନମାନଙ୍କଠାରୁ ବ୍ରିଟିଶ ଶାସନ ଭାରତ ପାଇଁ ଭଲ ଥିଲା ବୋଲି ଶୁଣି ସେମାନଙ୍କ ଜାତୀୟ ବିରୋଧୀ ଆଲୋଚନାକୁ ମୁଣ୍ଡିମାରି ସେ କହିଛନ୍ତି– "ସ୍ୱାଧୀନତାର ଅର୍ଥ ତମେମାନେ କାହୁଁ ବୁଝିବ? ତମେମାନେ ତ ସେ ଯୁଗର ମଣିଷ ନୁହଁ? ତମେ ବ୍ରିଟିଶ ଦେଖିନ କି ମହାତ୍ମା ଗାନ୍ଧି ଦେଖିନ । ତମେ ଖୁବ୍ ବଡ଼ରେ ଦେଖିଛ ଜଣେ ଅମିତାଭ ବଚ୍ଚନ ନ ହେଲେ ଗାଭାସ୍କର ବା କପିଳଦେବକୁ । ହଉ ଯାଅ, ମନଦେଇ ପାଠପଢ଼, ଯାହା ଭାଗ୍ୟରେ ଥିବ ।"[୧]

ପିଲାମାନଙ୍କର ଜାତୀୟତା ବିରୋଧୀ ମନୋବୃତ୍ତିକୁ ସେ ସଂପୂର୍ଣ୍ଣ ଏଡ଼ି ନ ପାରି ଭାଗ୍ୟ ଉପରେ ନିର୍ଭର କରିଛନ୍ତି । ମାତ୍ର ଅଗଷ୍ଟ ପନ୍ଦରର ପ୍ରତ୍ୟୁଷରେ ଗୃହ ଉପରେ ସ୍ତୀର ଜାତୀୟ ପତାକା ଉଡ଼ାଇବାକୁ ଦେଖି ସେ ଆନନ୍ଦିତ ହୋଇଛନ୍ତି ।

ଜୟନ୍ତଙ୍କ ପରି ଅନ୍ୟ ଜଣେ ଡେପୁଟି ସେକ୍ରେଟେରୀ ହେଉଛନ୍ତି ଅଜିତ୍ ରାୟ । କିନ୍ତୁ ତାଙ୍କ ଠାରେ ଜାତୀୟତାର ଉଦାରତା ପରିବର୍ତ୍ତେ ଉଦାସୀନତା ପରିଦୃଷ୍ଟ ହୁଏ । ନିଜସ୍ୱ ଉଦର ଚିନ୍ତନରେ ସେ ସତତ ଚେଷ୍ଟିତ । ତାଙ୍କ ଉଦର ଚିନ୍ତା ସାଧାରଣ ଦରିଦ୍ର, କ୍ଷୁଧାର୍ତ୍ତ ଜନତାଠାରୁ ଭିନ୍ନ । ବଞ୍ଚିବା ପାଇଁ ଖାଇବା ପରିବର୍ତ୍ତେ ଖାଇବା ପାଇଁ ବଞ୍ଚିବା ହେଉଛି ତାଙ୍କର କାମ୍ୟ । ଏହି ପ୍ରେକ୍ଷାପଟରେ ଅଜିତ୍ ରାୟଙ୍କ ସମାଧିସ୍ତୂପ ଗଳ୍ପର ମୁଖ୍ୟ ଚରିତ୍ର ଅଜିତ୍ ରାୟ । ଚାକିରି ଜୀବନ ମଧ୍ୟରେ ସେ ବିପୁଳ ଧନ ସମ୍ପଦର ଅଧିକାରୀ ହୋଇଛନ୍ତି । ଅର୍ଥର ମୋହରେ ନିଜର ବାସସ୍ଥଳୀ ସହରର ଐତିହ୍ୟ, ସଂସ୍କୃତି, ବିସ୍ମୃତି, ପ୍ରକୃତି ଆଦିକୁ ସେ ଦେଖିପାରି ନାହାଁନ୍ତି । ଅର୍ଥାନ୍ଧ ଅଜିତ୍‌ବାବୁଙ୍କର ଚାକିରି ହୋଇଛି ତାଙ୍କ ଜୀବନର ସବୁକିଛି । ଚାକିରିରେ ପଦୋନ୍ନତିକୁ ହସ୍ତଗତ କରିବା ହେଉଛି ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ଅଜିତ୍ ରାୟ ତୀବ୍ର ପ୍ରତିଯୋଗିତା ମଧ୍ୟରେ ଡେପୁଟି ସେକ୍ରେଟେରୀ ପଦାଳଙ୍କୃତ କରିଛନ୍ତି । ତାଙ୍କ ଦୁର୍ବଳତାର ସୁଯୋଗ ନେଇ ସାମାନ୍ୟ ଚପରାଶିର ବ୍ୟଙ୍ଗୋକ୍ତିକୁ ଅଫିସର ବୋଲାଉଥିବା ଅଜିତ୍‌ବାବୁ ପ୍ରତିରୋଧ କରିପାରି ନାହାଁନ୍ତି । ତାଙ୍କ ପତ୍ନୀ ପ୍ରବଞ୍ଚକ ଚପରାଶିକୁ ବିଶ୍ୱାସ କରି ସ୍ୱାମୀଙ୍କର ପ୍ରାଣତୁଲ୍ୟ ଅର୍ଥର ଅପଚୟ କରିବାକୁ ପ୍ରସ୍ତାବ

ଦେବା ପ୍ରକାରାନ୍ତରେ ଅଜିତବାବୁଙ୍କୁ ପ୍ରାଣହୀନ ସମାଧିରେ ପରିଣତ କରିଛି । ଅର୍ଥଗୃଧ୍ନ ଚାକିରିଜୀବୀର ଅସାଧୁତା ଓ ଅସହାୟତାର ବିକଳ ରୂପ ଦେଖିବାକୁ ମିଳେ ଅଜିତ୍ ରାୟଙ୍କ ବ୍ୟକ୍ତିତ୍ୱରେ ।

ଅଜିତ୍ ବାବୁଙ୍କ ଭଳି ଅସାଧୁ ଚରିତ୍ରମାନେ ଚାକିରିର କଳା ପଇସାରେ ରାତାରାତି କୋଠା, ଗାଡ଼ି ଭଳି କୁବେର ସମାନ ସମ୍ପତ୍ତିର ଯେଉଁ ମାଲିକ ହେଉଛନ୍ତି ତାହା ଆଜିର ଯୁବକମାନଙ୍କୁ ସରକାରୀ ଚାକିରି କରିବା ପ୍ରତି ଲୋଭାବିଷ୍ଟ କରିଛି । ସେମାନେ ଯେକୌଣସି ପ୍ରକାରେ ଚାପ ପକାଇ ଇଣ୍ଟରଭ୍ୟୁକାରୀଙ୍କୁ ପ୍ରଭାବିତ କରିବା ପାଇଁ ପ୍ରୟାସୀ । ଇଣ୍ଟରଭ୍ୟୁକାରୀ ଅସାଧୁ ହୋଇଥିଲେ କିଛି ଯାଏଆସେ ନାହିଁ । ମାତ୍ର ସତ୍ ଚରିତ୍ରସଂପନ୍ନ ବ୍ୟକ୍ତି ମନରେ ଯେଉଁ ତିକ୍ତଭାବ ସୃଷ୍ଟି ହୁଏ ତା'ର ପରିଚୟ ଦିଏ ଟେଲିଫୋନ୍ କଲ-ଇଣ୍ଟରଭ୍ୟୁ ପୂର୍ବଦିନର ଗଳ୍ପ ନାୟକ ନୃପେନ ସାହାଦେଓ ।

ଅଫିସର ନୃପେନ ସାହାଦେଓ ତାଙ୍କ ଅଫିସ୍‌ରେ ଗୋଟିଏ ପିଅନ ପୋଷ୍ଟର ଇଣ୍ଟରଭ୍ୟୁ ପୂର୍ବଦିନ ଅନେକ ଟେଲିଫୋନ୍ କଲ୍ ପାଇଛନ୍ତି । ଏସବୁ ଟେଲିଫୋନ୍ କଲ୍‌ରେ ସେ ଅନୁନୟ ବିନୟ, ଧମକ ଚମକ ପାଇଛନ୍ତି । ବ୍ୟସ୍ତ ଓ ବିବ୍ରତ ହୋଇପଡ଼ିଥିଲେ ମଧ୍ୟ କାହାରି କଥାକୁ ସେ ଗୁରୁତ୍ୱ ଦେଇନାହାନ୍ତି । ନିଜ ଘରର ପୂଜାରୀ ପିଲା ପାଇଁ ପତ୍ନୀର ଅନୁରୋଧକୁ ମଧ୍ୟ ଉପେକ୍ଷା କରିଛନ୍ତି । ବହୁବର୍ଷ ପରେ ସେଦିନ ଅର୍ଦ୍ଧରାତ୍ରିରେ କଲେଜ ଜୀବନର ବାନ୍ଧବୀଙ୍କ ଫୋନ୍ ପାଇଛନ୍ତି । ପ୍ରେମିକାଙ୍କ ପୁତ୍ରର ପିଅନ ପୋଷ୍ଟ ପାଇଁ ଆବେଦନ କରିଥିବା କଥା ଶୁଣି ପ୍ରେମାନୁଭୂତିରେ ନୃପେନବାବୁଙ୍କ ବକ୍ଷ ସହିତ ଜଡ଼ିତ ଫୋନ୍‌ଟି ତଳକୁ ଖସିପଡ଼ିଛି । ଏଥିରୁ ତାଙ୍କର ପ୍ରେମ ଅପେକ୍ଷା କର୍ତ୍ତବ୍ୟ ନିଷ୍ଠତାର ଆଧିକ୍ୟ ପରିଦୃଷ୍ଟ ହୁଏ । ବିଭିନ୍ନ ପ୍ରକାର ଫୋନ୍ କଲ୍ ନେଇ ନୃପେନବାବୁଙ୍କର ମାନସିକ ଉଦ୍‌ବେଳନ ଦେଖାଯାଇ ଥିଲେ ମଧ୍ୟ ସେ ନିଜର ଦାୟିତ୍ୱ ପ୍ରତି ନିଷ୍ଠାପର ହୋଇଛନ୍ତି । ଦୁର୍ନୀତିମୁକ୍ତ, କର୍ତ୍ତବ୍ୟପରାୟଣ ନୃପେନବାବୁ ଆଦର୍ଶବାନ୍ ବ୍ୟକ୍ତିତ୍ୱର ପରାକାଷ୍ଠା ଦେଖାଇବାରେ ସକ୍ଷମ ହୋଇଛନ୍ତି ।

ନୃପେନ୍ ବାବୁଙ୍କ ପରି ଦୁର୍ନୀତିମୁକ୍ତ ଓ କର୍ତ୍ତବ୍ୟରତ ଅଫିସରମାନେ ଭାରତୀୟ ରାଜନୈତିକ ନେତା ବା ଉପରିସ୍ଥ ଅଫିସରମାନଙ୍କ ଯଥାର୍ଥତାହୀନ କଥାକୁ ଉପେକ୍ଷା କରି ଭାରତୀୟ ପ୍ରଶାସନିକ କ୍ଷେତ୍ରରେ ତିଷ୍ଠିବା ସମ୍ଭବପର ନୁହେଁ । ଜୀବନ୍ତ ଅବସ୍ଥାରେ ମଧ୍ୟ ଏମାନଙ୍କ ଚେରକୁ ଉପାଡ଼ି ଫୋପାଡ଼ି ଦିଆଯାଏ । ବିଭିନ୍ନ ଆଳରେ ସେମାନଙ୍କୁ ଚାକିରିରୁ ବହିଷ୍କାର କରାଯାଏ । ଅର୍ଦ୍ଧେନ୍ଦୁ ଦାସଙ୍କ ଚାକିରି ଜୀବନରେ ଏଭଳି ଅପ୍ରୀତିକର ଘଟଣା ଦେଖିବାକୁ ମିଳେ ଗ୍ଲାସନଷ୍ଟ୍ ଗଳ୍ପରେ ।

ଅର୍ଦ୍ଧେନ୍ଦୁର ଜନ୍ମ ନିସର୍ଗମୟ ପଲ୍ଲୀର ପଦ୍ମପୋଖରୀ ହୁଡ଼ାସ୍ଥିତ ନିଃସ୍ୱ କୁଡ଼ିଆରେ । ପଦ୍ମଫୁଲ ପ୍ରତି ଆବାଲ୍ୟରୁ ଥିଲା ତାଙ୍କର ଅହେତୁକ ମୋହ । କିନ୍ତୁ ଉଗ୍ର କମ୍ୟୁନିଜିମ୍‌ର ରକ୍ତାକ୍ତ ବିପ୍ଳବର ଅବହାଓ୍ୱାରେ ସେ ଭାରତୀୟ ସଂସ୍କୃତିର ନିଦର୍ଶନ ପଦ୍ମ ପ୍ରତି ବିମୁଖ ହୋଇଛନ୍ତି । ଏପରିକି ରକ୍ତର ପ୍ରତୀକ ଗାଢ଼ ଲାଲ ରଙ୍ଗ ତାଙ୍କର ପ୍ରିୟ ହୋଇଥିବା ବେଳେ ଗେରୁଆ ରଙ୍ଗ ହୋଇଛି ଅପ୍ରିୟ । ଗେରୁଆ ରଙ୍ଗ ପରିହିତ ଭାରତୀୟ ସନ୍ନ୍ୟାସ ପରମ୍ପରା ପ୍ରତି ତାଙ୍କର ତୀବ୍ର ବିତୃଷ୍ଣା ଭାବ ଜାତ ହୋଇଛି । ଆଦିବାସୀ ଅଞ୍ଚଳରେ ଆଇ.ଏ.ଏସ୍ ଚାକିରିର ପ୍ରଥମ ନିଯୁକ୍ତି ସେ ପାଇଥିବାବେଳେ ସେଠାକାର ଶବରୁଣୀଙ୍କ ପଦ୍ମଫୁଲ ପାଇଁ କଳିତକରାଳ ଘଟଣା ତାଙ୍କ ସଂସ୍କୃତି ବିରାଗୀ ଭାବକୁ ପ୍ରତିସାରିତ କଲେ ମଧ୍ୟ ବିପ୍ଳବାତ୍ମକ ସ୍ୱରକୁ ମଉଳାଇ ଦେଇନାହିଁ । ଋଷିଆରେ କମ୍ୟୁନିଜିମ୍‌ର ପରିବର୍ତ୍ତିତ ରୂପ 'ଗ୍ଲାସ୍‌ନଷ୍ଟ୍' ଦ୍ୱାରା ସେ ଅନୁପ୍ରାଣିତ ହୋଇଛନ୍ତି । ଭାରତୀୟ କଳୁଷିତ ପ୍ରଶାସନିକ କ୍ଷେତ୍ରରେ ନିର୍ମଳ ସଂସ୍କାର ଆଣିବା ନିମନ୍ତେ ସେ ବିପ୍ଳବର ସ୍ୱରକୁ ଜାହିର୍ କରିଛନ୍ତି । ଦୁର୍ଭିକ୍ଷ ପ୍ରପୀଡ଼ିତ କଳାହାଣ୍ଡିରେ ପ୍ରଧାନମନ୍ତ୍ରୀଙ୍କ ପରିଦର୍ଶନର ଫଳାଫଳକୁ ନେଇ ପ୍ରସ୍ତୁତ ମିଥ୍ୟା ଫାଇଲ୍‌କୁ ସେ ଉଚ୍ଚସ୍ତରୀୟ ବୈଠକରେ ବିରୋଧ କରି ଚାକିରିରୁ ବହିଷ୍କୃତ ହୋଇଛନ୍ତି । ପରିଣତିରେ ସେ ସ୍ୱ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ।

କମ୍ୟୁନିଜିମ୍‌ର ପ୍ରଭାବ ଅର୍ଦ୍ଧେନ୍ଦୁଙ୍କୁ ଯେଉଁପରି ସାମୟିକ ଭାବେ ସଂସ୍କୃତି ବିଦ୍ୱେଷୀ କରିଥିଲା, ସେହିପରି ଈଶ୍ୱର ବିରାଗୀ ଭାବ ମାନବିକ ଆତ୍ମାର ଉତ୍ତରଣରେ ପ୍ରତିବନ୍ଧକ ହୋଇଛି । ଯଦ୍ୱାରା ସଂପ୍ରତି କେତେକ ଭାରତୀୟ ସଂସ୍କୃତିର ପ୍ରତୀକ,

ଶାଶ୍ୱତ ଆତ୍ମା ନିହିତ ପ୍ରସ୍ତର ପ୍ରତିମାକୁ ପ୍ରାଣହୀନ ପ୍ରତିମା ଭାବେ ଅବଜ୍ଞା କରୁଛନ୍ତି । ଅର୍ଥ ଲାଳସାରେ କଳାଭାସ୍କର୍ଯ୍ୟପୂର୍ଣ୍ଣ ମୂର୍ତ୍ତିକୁ ବିକ୍ରି କରିଦେଉଛନ୍ତି । ଏହି ଅଭାବନୀୟ ଘଟଣା ଦେଖିବାକୁ ମିଳେ ସିଦ୍ଧାର୍ଥ ଚରିତ୍ର ମଧ୍ୟରେ ।

ଆଇ.ଏ.ଏସ୍ ଚାକିରିର ପ୍ରତିପତ୍ତିରେ ସିଦ୍ଧାର୍ଥ ତାଙ୍କର କନିଷ୍ଠା ସହୋଦରା ନିମନ୍ତେ ମନୋନୀତ ଇଞ୍ଜିନିୟର ବର ବିଜନକୁ ହୀନ ଦୃଷ୍ଟିରେ ଦେଖିଛନ୍ତି । ଭଉଣୀ, ଭିଣୋଇ ଓ ଭଣଜାଙ୍କର ପ୍ରଥମ ଥର ପାଇଁ ଆମେରିକାରୁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ସମୟରେ ସେ ସେମାନଙ୍କୁ ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇବାକୁ ପ୍ରୋଗ୍ରାମ କରିଛନ୍ତି । ଅସାଧୁ ଅଫିସ୍‌ର ଭାବେ ଅଫିସ୍ ଗାଡ଼ି ଓ ଅଫିସ୍ ଡ୍ରାଇଭର୍ ଯୋଗେ ଦୂରବର୍ତ୍ତୀ ସ୍ଥାନ ବୁଲାଇବାର ସ୍ଥିର କରି ସିଦ୍ଧାର୍ଥ ସେମାନଙ୍କୁ ନିକଟସ୍ଥ ଦେବମନ୍ଦିର ଓ ବିଗ୍ରହ ଦେଖାଇବାକୁ ବାହାରିଛନ୍ତି । ରାଜ୍ୟ ପ୍ରତ୍ନତତ୍ତ୍ୱ ସଂଗ୍ରହାଳୟର ପ୍ରାଚୀନ ଦେବମୂର୍ତ୍ତିଗୁଡ଼ିକୁ ମୃତ ଦେବତା ବୋଲି ସେ ତାଙ୍କର ପାଞ୍ଚବର୍ଷର ଭଣଜାକୁ ବୁଝାଇଛନ୍ତି । ତାଙ୍କର ଏହି ନାସ୍ତିକ କଥା ଶୁଣି ଭଣଜାର ବିସ୍ମୟ ପ୍ରକାଶ ଓ ଭିଣୋଇ ତାଙ୍କୁ କମ୍ୟୁନିଷ୍ଟ ବୋଲି ଥଟ୍ଟା କରିବାରେ ସେ ନିଜକୁ ପକ୍‌କା କମ୍ୟୁନିଷ୍ଟ ବୋଲି ପରିଚୟ ଦେଇଛନ୍ତି । କେବଳ ସେତିକି ନୁହେଁ, ଅମୂଲ୍ୟ କାରୁକାର୍ଯ୍ୟ ନିହିତ ମୂର୍ତ୍ତିଗୁଡ଼ିକୁ ବିଦେଶୀଙ୍କୁ ବିକ୍ରି କରିଦେଇ ଭାରତରୁ ଦାରିଦ୍ର୍ୟ ଦୂରୀକରଣର ପ୍ରସ୍ତାବ ମଧ୍ୟ ବାଢ଼ିଛନ୍ତି ।

ଭାରତର ଶାଶ୍ୱତ ଜଳବାୟୁରେ ପ୍ରତିପାଳିତ ଜନତା ଆଜି ଈଶ୍ୱର ଅବିଶ୍ୱାସୀ ହୋଇଥିବା ସମୟରେ ବିଦେଶର ବସ୍ତୁବାଦୀ ସଭ୍ୟତାରେ ପରିପାଳିତ ପ୍ରବାସୀ ଭାରତୀୟ ଈଶ୍ୱରବିଶ୍ୱାସୀ ହୋଇଛି । ଏହାକୁ ପ୍ରକାଶ କରେ ଚରିତ୍ର ବିଜନ ସେନାପତି ।

ବିଜନ ସେନାପତି ଚଳନ୍ତି ଠାକୁର ଗଳ୍ପର ଏକ ଗୌଣ ଚରିତ୍ର । କ୍ଷମତା ବା ଅର୍ଥ ପାଇଁ ସେ ଲାଳାୟିତ ନୁହଁନ୍ତି । ତାଙ୍କ ସମୟର ଅନେକ ଛାତ୍ର ଆଇ.ଏସ୍‌ସି ପରେ ଆର୍ଟସ୍ ପଢ଼ି ଆଇ.ଏ.ଏସ୍ ଚାକିରି କରିବାକୁ ଲାଳାୟିତ ଥିବାବେଳେ ସେ ବିଜ୍ଞାନ ପାଠକୁ ପରିତ୍ୟାଗ କରିପାରି ନାହାଁନ୍ତି । ଅଳ୍ପ କିଛିଦିନ ପରେ ସେ ଆମେରିକାର ଏମ୍.ଆଇ.ଟିରୁ ଇଞ୍ଜିନିୟରିଂରେ ପି.ଏଚ୍.ଡି କରି ସେଠାକାର ବିଖ୍ୟାତ ଜେନେରାଲ

ମୋଟର୍ସ କମ୍ପାନୀରେ ଯୋଗଦେଇଛନ୍ତି । ଦୀର୍ଘ ପାଞ୍ଚବର୍ଷ ପରେ ସେ ପ୍ରଥମ ଥର ପାଇଁ ପତ୍ନୀ ଓ ପୁତ୍ର ସହିତ ସ୍ୱଦେଶକୁ ବୁଲିଆସିଛନ୍ତି । ଶାଳକ ସିଦ୍ଧାର୍ଥ, ଭଉଣୀ-ଭିଣୋଇଙ୍କ ସହ ମନ୍ଦିରମାଳିନୀ ଭୁବନେଶ୍ୱରର ଦର୍ଶନୀୟ ସ୍ଥାନ ବୁଲି ଯାଇଛନ୍ତି । ଦର୍ଶନରେ ପାଞ୍ଚବର୍ଷର ଶିଶୁପୁତ୍ର ମନରେ ଯେଉଁ କୌତୂହଳପ୍ରଦ ପ୍ରଶ୍ନ ଉଙ୍କିମାରିଛି ସେ ସିଦ୍ଧାର୍ଥଙ୍କ ପରି ତାକୁ ହେୟଜ୍ଞାନ ନ କରି ବା ଈଶ୍ୱର ବିରୋଧୀ ଅବିଶ୍ୱାସ ଯୋଗ୍ୟ ଉତ୍ତର ନ ଦେଇ ବରଂ ଯଥାର୍ଥ ଉତ୍ତର ଦେଇଛନ୍ତି । ବିଜନର ଚରିତ୍ରରୁ ଉଦାର ହୃଦୟ ଓ ନିରହଙ୍କାର ଭାବର ସ୍ୱରୂପ ଦେଖିବାକୁ ମିଳେ ।

ବିଜନ ଠାରେ ଈଶ୍ୱର ବିଶ୍ୱାସର ଯେଉଁ ବ୍ୟଞ୍ଜନା ପ୍ରକାଶ ପାଇଛି ତାହା ସ୍ପଷ୍ଟ ଭାବେ ପରିଦୃଶ୍ୟ ହୁଏ ତାଙ୍କ ଶିଶୁପୁତ୍ର ମିସ୍କୁନ୍ ମାଧ୍ୟମରେ । ଚଳନ୍ତି ଠାକୁର ଗଳ୍ପରେ ମିସ୍କୁନ ଚରିତ୍ର ଏହି ଆଧାରରେ ପରିକଳ୍ପିତ ।

ମିସ୍କୁନ ହେଉଛି ଚଳନ୍ତି ଠାକୁର ଗଳ୍ପର ଭାରତୀୟ ବଂଶୋଦ୍ଭବ ଆମେରିକୀୟ ଶିଶୁ । ଭାରତୀୟ ରକ୍ତ ଓ ଆମେରିକୀୟ ସ୍ୱଭାବକୁ ନେଇ ଶିଶୁ ଚରିତ୍ର ମିସ୍କୁନ ଫାଜିଲ ନୁହେଁ କିମ୍ବା ଈଶ୍ୱର ଅବିଶ୍ୱାସୀ ନୁହେଁ । ପାଞ୍ଚବର୍ଷର ମିସ୍କୁନ୍ ଆମେରିକାର ମାର୍କଟ୍ୱେନ୍, ଇମରସନ ପ୍ରମୁଖ ପ୍ରଖ୍ୟାତ ବ୍ୟକ୍ତିମାନଙ୍କୁ ଚିହ୍ନିଛି । ଏପରିକି ସେମାନଙ୍କର ଜନ୍ମତାରିଖ ସମ୍ବନ୍ଧରେ ମଧ୍ୟ ଅବଗତ ଅଛି । ମିସ୍କୁନ ପରଶୁରାମେଶ୍ୱର ମନ୍ଦିରର ପନ୍ଦରଶହ ବର୍ଷ ସଂପର୍କରେ କଳ୍ପନା ବି କରିପାରେ । ସେ ଆମେରିକାର ରାଜନୈତିକ ଘଟଣାବଳୀ ପ୍ରତି ଯେପରି ସଚେତନ, କମ୍ପ୍ୟୁଟର ପରିଚାଳନାରେ ମଧ୍ୟ ସୁଦକ୍ଷ । ମିସ୍କୁନ୍ ଆମେରିକାର ପିଲାମାନଙ୍କ ପରି ସୁଚତୁର ଏବଂ ଈଶ୍ୱରବିଶ୍ୱାସୀ । ତେଣୁ ସେ ତା'ର ମାମୁଙ୍କର ଡେଡ୍‌ଗଡ୍ କଥା ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇଉଠିଛି । ଓଡ଼ିଶା ରାଜ୍ୟ ପ୍ରତ୍ନତାତ୍ତ୍ୱିକ ସଂଗ୍ରହାଳୟରେ ତା'ର ମାମୁ, ମାଆଙ୍କର ଈଶ୍ୱର ବିରୋଧୀ କଥାଶୁଣି ସେ ହୁଏ ଗୁରୁଗମ୍ଭୀର । ପରବର୍ତ୍ତୀ ସମୟରେ ହୋଟେଲରୁ ଅନ୍ତର୍ଦ୍ଧାନ ହୋଇ ମିଉଜିୟମ୍‌ର ବୁଦ୍ଧ ମୂର୍ତ୍ତି ପଛପଟେ ଧ୍ୟାନମଗ୍ନ ହୋଇଛି । ତା'ର ମାମୁ ତାକୁ କୋଳେଇ ନେବାକୁ ହାତ ବଢ଼ାଇ ଦେବାରେ ସେ ତାଙ୍କ ହାତକୁ ଆଡ଼େଇ ଦେଇଛି । ବିଦ୍ରୁପାତ୍ମକ ଭାବେ ସୂଚେଇ ଦେଇଛି ଭାରତର ଦେବ୍‌ତା ମୃତ ନୁହେଁ, ତା'ରି ଭଳି ପ୍ରାଣବନ୍ତ, ପାପଶୂନ୍ୟ ଓ ଭବିଷ୍ୟତର ପଥପ୍ରଦର୍ଶକ ।

ମିସ୍କୁନ୍ ଠାରେ ଭାରତୀୟ ଈଶ୍ୱର ବିଶ୍ୱାସର ଗଭୀରତା ପ୍ରତିଭାତ ହୁଏ । ମିସ୍କୁନ୍ ପରି କୌଣସି ପାଞ୍ଚବର୍ଷର ଶିଶୁ ମଧ୍ୟରେ ଗଭୀର ଆଧ୍ୟାତ୍ମିକ ଚେତନା ପ୍ରକାଶ ପାଇବା ବାସ୍ତବ ଜୀବନରେ ସ୍ୱାଭାବିକ ନ ହେଲେ ମଧ୍ୟ ସାରସ୍ୱତ ଜଗତରେ ଅସ୍ୱାଭାବିକ ନୁହେଁ । ଗାଳ୍ପିକଙ୍କର ଏହା ଏକ ଫାଣ୍ଟାସିଧର୍ମୀ ଚରିତ୍ର ।

ଶିଶୁ ହେଉଛି ଈଶ୍ୱରଙ୍କର ପ୍ରତୀକ । ଈଶ୍ୱର ଯେଉଁଭଳି ବ୍ୟକ୍ତିର ମନସ୍କାମନା ପୂର୍ଣ୍ଣ କରନ୍ତି, ଠିକ୍ ସେହିପରି ଶିଶୁ ହିଁ ଦେଶବାସୀଙ୍କ ଭବିଷ୍ୟତର ଆଶା, ଭରଷାକୁ ପୂରଣ କରେ । କିନ୍ତୁ ଆଜିର ଜଡ଼ବାଦୀ ମାନବ ଈଶ୍ୱରଙ୍କୁ ମୃତ ବୋଲି ଘୋଷଣା କରି ଅର୍ଥ ଲାଳସାରେ ବିଦେଶକୁ ପଠାଇବା ନିମନ୍ତେ ଯେପରି କୁଣ୍ଠାବୋଧ କରେ ନାହିଁ, ସେପରି ମାନବଶିଶୁକୁ ହେୟଜ୍ଞାନ କରି ନିଜର ଆତ୍ମସ୍ୱାର୍ଥ ନିମନ୍ତେ ପୂତିଗନ୍ଧମୟ ନର୍ଦ୍ଦମା ନିକଟରେ ଛାଡ଼ିଦେବାକୁ ତା' ବିବେକ ତାକୁ ବାଧା ଦିଏ ନାହିଁ । ଏହିଭଳି ଗୋଟିଏ ପରିତ୍ୟକ୍ତ ଶିଶୁ ସହିତ ଗାଳ୍ପିକଙ୍କର ସାକ୍ଷାତ ହୁଏ ବସ୍‌ଷ୍ଟାଣ୍ଡର ନର୍ଦ୍ଦମା ପାଖରେ । ଶିଶୁଟିକୁ ନେଇ ତାଙ୍କ ହୃଦୟରେ ଯେଉଁ ଉଦ୍‌ବେଗ ଓ ସହାନୁଭୂତି ଜାତ ହୋଇଛି ତାକୁ ଗାଳ୍ପିକ ନିଜେ ଚରିତ୍ର ରୂପେ ବ୍ୟକ୍ତ କରିଛନ୍ତି ।

ଜନଗଣଙ୍କ ମନ ଓ ତା'ର ଅଧିନାୟକ ଗଳ୍ପରେ ଗାଳ୍ପିକ ନିଜେ ବସଯାତ୍ରୀ ଭାବେ ପ୍ରଧାନ ଚରିତ୍ରର ଭୂମିକା ଗ୍ରହଣ କରିଛନ୍ତି । ସେ ବସ୍‌ରେ ଉପବିଷ୍ଟ ଥିବା ସମୟରେ ତାଙ୍କ ଆଖି ଲାଖି ଯାଇଛି ବସ୍‌ଷ୍ଟାଣ୍ଡର ପୂତଗନ୍ଧମୟ ନର୍ଦ୍ଦମା ପାଖରେ କ୍ରୀଡ଼ାରତ ସୁଠାମ ଶିଶୁଟି ଉପରେ । ଶିଶୁଟିର ପ୍ରବୃତ୍ତିଗତ ଐଶ୍ୱରିକ ଶକ୍ତିକୁ ଦେଖି ସେ ବିସ୍ମିତ ହୋଇଉଠନ୍ତି । ଅସହାୟ ଶିଶୁଟି ପ୍ରତି ତାଙ୍କ ମନରେ ଦୟା ଜାତ ହେବା ସହିତ ସହଯାତ୍ରୀଙ୍କ ପ୍ରତି କ୍ଷୋଭ ପ୍ରକାଶ ପାଇଛି । କାରଣ କୌଣସି ଯାତ୍ରୀ ଶିଶୁଟିକୁ ଦୃଷ୍ଟି ନ ଦେଇ ବୁଲା ବେପାରୀର ହାର କିଣିବାରେ ବ୍ୟସ୍ତଥା'ନ୍ତି । ଗାଳ୍ପିକଙ୍କର ନିଜ ପ୍ରତି ମଧ୍ୟ ଅସହାୟତା ଦେଖାଦେଇଛି । ସେ ଜଣେ ଉଚ୍ଚ ସାମାଜିକ ପ୍ରାଣୀ ହୋଇଥିବାରୁ ଶିଶୁଟିକୁ କୋଳେଇ ନେଇପାରନ୍ତି ନାହିଁ ବା କାହାର ସେ ଶିଶୁ ଡାକି କହିଦେଇ ପାରନ୍ତି ନାହିଁ । ତାଙ୍କର ଏହି ଅକର୍ତ୍ତବ୍ୟବୋଧର ମୁଖ୍ୟ କାରଣ ହୁଏ ବୁଲା ବେପାରୀର ମନୋମୁଗ୍ଧକର କଥା । ଅର୍ଥାତ୍ ଶିଶୁଟି ପ୍ରତି ବସ୍‌ଯାତ୍ରୀଙ୍କ ଦୃଷ୍ଟି ଫେରାଇବା ପାଇଁ ବୁଲା ବେପାରୀର ମନଲୋଭା ଭାଷା ଓ ସ୍ୱରକୁ ଅତିକ୍ରମ କଲାଭଳି ଭାଷାଶୈଳୀ ତାଙ୍କ ନିମନ୍ତେ ଥିଲା ଅଭାବିତ । ଶିଶୁଟି ପ୍ରତି ଯାତ୍ରୀମାନଙ୍କ

ଦୃଷ୍ଟି ଫେରାଇବା ପାଇଁ ସେ ବୁଲା ବେପାରୀର ଭାଷାକୁ ପାଞ୍ଚ ମିନିଟ୍ ସକାଶେ ଧାର୍ ମାଗନ୍ତି । କିନ୍ତୁ ବେପାରୀଟି ଦ୍ୱାରା ଉପେକ୍ଷିତ ହୋଇ ନିଜର ଭାଷା ଓ ସ୍ୱରରେ ଯାତ୍ରୀମାନଙ୍କୁ ଶିଶୁ ବିଷୟରେ ଅବଗତ କରାଇବାକୁ ଚେଷ୍ଟା କରିଛନ୍ତି । ଯାତ୍ରୀମାନେ ତାଙ୍କ କଥାକୁ ଗୁରୁତ୍ୱ ନ ଦେଇ ବରଂ ଉପହାସ କରିଛନ୍ତି ।

ଆଜିର ବସ୍ତୁବାଦୀ ଜନତାଙ୍କ ନିକଟରେ ଗାଳ୍ପିକଙ୍କ ପରି ସମ୍ବେଦନଶୀଳ ବ୍ୟକ୍ତିଙ୍କର ବାସ୍ତବ ବଚନ ଅଗ୍ରାହ୍ୟ ହେଉଥିବାବେଳେ ପ୍ରତାରକର ପ୍ରଲୋଭିତ କପଟୋକ୍ତି ହିଁ ଗ୍ରାହ୍ୟ ହୁଏ । ଏହି ପ୍ରସଙ୍ଗରେ ବୁଲାବେପାରୀର ଚରିତ୍ର ବିଚାର କରାଯାଇପାରେ ।

ବୁଲାବେପାରୀ ହେଉଛି ଜନଗଣଙ୍କ ମନ ଓ ତା'ର ଅଧିନାୟକ ଗଳ୍ପର ଗୌଣ ଚରିତ୍ର । ବସ୍‌ଷ୍ଟାଣ୍ଡରେ ମନୋହାରୀ ଜିନିଷ ବୁଲି ବିକିବା ତା'ର କାମ । ମନରେ ତା'ର କପଟ ଚିନ୍ତା ଓ ମୁଖରେ ନିଷ୍କପଟ ଦରଦୀ ବନ୍ଧୁର ଫୁତ୍କାର । ବାକ୍‌ଚାତୁରୀ ବଳରେ ସେ ତା'ର ନକଲି ଜିନିଷକୁ ଅସଲି ରୂପେ ପରିଚିତ କରାଇ ଗ୍ରାହକକୁ ବିକ୍ରୟ କରେ । ତା'ର ବାକ୍‌ପଟୁତା ମଧ୍ୟରେ ଭରିରହିଥାଏ ମନୋହର ଶବ୍ଦ ସମ୍ଭାର । ସୁଲଳିତ ସ୍ୱରରେ ସେ ତା'ର ଭାଷାକୁ ମନୋଗ୍ରାହ୍ୟ କରି ଯାତ୍ରୀଙ୍କ ମନର ଅଧିନାୟକ ସାଜିଥାଏ । ବସ୍‌ଷ୍ଟାଣ୍ଡର ନର୍ଦ୍ଦମା ନିକଟରେ ଖେଳୁଥିବା ପରିତ୍ୟକ୍ତ ଶିଶୁଟିକୁ ନେଇ ଗାଳ୍ପିକଙ୍କ ମନ୍ତବ୍ୟକୁ ବସ୍‌ଯାତ୍ରୀମାନେ ଉପେକ୍ଷା କରିଥିବାବେଳେ ବୁଲା ବେପାରୀର କପଟ କଥାକୁ ସାଦରେ ଗ୍ରହଣ କରିନେଇଛନ୍ତି । ଧୂର୍ତ୍ତ ବେପାରୀ କରୁଣ ରସାଶ୍ରିତ ସ୍ୱରରେ ଶିଶୁକୁ ନିଜର ବୋଲି ପରିଚୟ ଦେବା ସହିତ ତା'ର ମା' ସାତଦିନ ତଳେ ଇହଧାମ ତ୍ୟାଗ କରିଥିବାର କହିଛି । ବେପାରୀର କଥାରେ ଯାତ୍ରୀମାନେ ସମବେଦନା ପ୍ରକାଶକରି ଦୁଇଟଙ୍କିଆ, ପାଞ୍ଚଟଙ୍କିଆ ନୋଟ୍ ତା' ହାତକୁ ବଢ଼ାଇ ଦେଇଛନ୍ତି । ସେ ଟଙ୍କା ସଂଗ୍ରହ କରି ଶିଶୁକୁ ନ ନେଇ ହଠାତ୍ ଉଭାନ୍ ହୋଇଯାଇଛି ।

ବୁଲା ବେପାରୀର ଚରିତ୍ରରୁ ବସ୍ତୁବାଦୀ ଲୋକ କୌଣସି କଥାର ଅନ୍ତଃରୂପକୁ ନ ବୁଝି ବାହ୍ୟାଡ଼ମ୍ବରରେ ଭାସିଯିବା ହିଁ ସ୍ପଷ୍ଟ ସୂଚିତ ହୁଏ । ଏମାନଙ୍କ ଦୃଷ୍ଟିରେ ଅପାର୍ଥିବ ପ୍ରେମ ପରିହସିତ ହୋଇ ପାର୍ଥିବ ପ୍ରେମ ପରିଦୃଶ୍ୟ ହୁଏ । ଏଭଳି

ବ୍ୟକ୍ତିଙ୍କର ହୀନ ଦୃଷ୍ଟିକୁ ସହୃଦୟର ସହ ବିଚାର କରି ପରିବର୍ତ୍ତନ ଆଣିବା ବିଜ୍ଞଲୋକର କର୍ତ୍ତବ୍ୟ । ଏହି ଦୃଷ୍ଟିକୋଣରେ ବନବିହାରୀ ଚରିତ୍ର କଳ୍ପିତ ।

କଲେଜ ହତାରେ ଜହ୍ନରାତି ଗଳ୍ପର ଚରିତ୍ର ବନବିହାରୀ ଚୌଧୁରୀ କଲେଜର ଅଧକ୍ଷ । କଲେଜର ରାତ୍ରି ଜଗୁଆଳ ବୀରବାହାଦୁର୍ ନାମରେ ସେ ଅନେକ ଅଭିଯୋଗ ପାଇଛନ୍ତି । ସେସବୁ ମଧରେ ଗୁରୁତର ଅଭିଯୋଗଟି ଆଣିଛନ୍ତି କଲେଜର ବଡ଼ବାବୁ । ସେ ଲୋକମାନଙ୍କର କଥାବାର୍ତ୍ତାକୁ ଭିତ୍ତିକରି ଅଭିଯୋଗ କରିଛନ୍ତି ଯେ ବୀରବାହାଦୁର ଜଣେ ତାନ୍ତ୍ରିକ । ତା' ଠାରୁ ଜଣେ ଯୁବ ଅଧାପକ ଜଡ଼ିବୁଟି ପାଇ ଛାତ୍ରୀ ନିବାସରୁ ଗୋଟିଏ ଛାତ୍ରୀ ହରଣଚାଲ କରିନେବାର ମସୁଧା କରୁଛନ୍ତି । ଅର୍ଦ୍ଧରାତ୍ରିରେ ବାହାଦୁର ନିକଟରେ ବସି ଅଧାପକ ଜଣକ ତନ୍ତ୍ରବିଦ୍ୟା ମଧ ଶିକ୍ଷା କରୁଛନ୍ତି । ଅଧକ୍ଷ ସତ୍ୟାସତ୍ୟ ତଦନ୍ତ କରିବା ନିମନ୍ତେ ସେଦିନ ରାତ୍ରିରେ ଘଟଣାସ୍ଥଳକୁ ଯାଇଛନ୍ତି । ବୀରବାହାଦୁର୍ ବସିଥିବା ଆମ୍ବ ଗଛ ମୂଳରୁ ପ୍ରାୟତଃ ଦଶଫୁଟ୍ ଦୂରରେ ନିଜକୁ ଲୁକ୍‌କାୟିତ ରଖି ଅଧକ୍ଷ ଦେଖିବାକୁ ପାଇଛନ୍ତି ତା' ସାମ୍ନାରେ ଦୁଇହଳ ଜ୍ୱଳନ୍ତ ଆଖି । ଆଖି ଦୁଇହଳ ସେହି ଯୁବ ଅଧାପକ ଓ ଛାତ୍ରୀର ବୋଲି ତାଙ୍କର ଧାରଣା ହୋଇଛି । ସେ ଉତ୍ତ୍ୟକ୍ତ ହୋଇ ବାହାଦୁରକୁ ଚାକିରିରୁ ବହିଷ୍କାର କରିବା ପାଇଁ ଧମକ ଦେଇଛନ୍ତି । ପରେ ତାଙ୍କର ଜିଜ୍ଞାସିତ ଆଖି ଦୁଇହଳ ଦୁଇଟି କୋକିଶିଆଳିର ବୋଲି ଜାଣି ବାହାଦୁର ପ୍ରତି ଥିବା ତାଙ୍କର ଅବିଶ୍ୱାସକୁ ସେ ଦୂରେଇ ଦେଇଛନ୍ତି । ଅଧକ୍ଷ ତାଙ୍କର ଉଚ୍ଚ ପଦମର୍ଯ୍ୟାଦାକୁ ଭୁଲି ବୀରବାହାଦୁର୍‌ର କାନ୍ଧକୁ ଆଦରରେ ନିଜ ଆଡ଼କୁ ଟାଣି ଆଣିଛନ୍ତି । ବନବିହାରୀ ଚୌଧୁରୀଙ୍କ ଚରିତ୍ରରୁ ତାଙ୍କର କର୍ତ୍ତବ୍ୟପରାୟଣତା ଓ ମାନବିକ ସହୃଦୟତା ସ୍ପଷ୍ଟ ବାରି ହୋଇଯାଏ । ବନବିହାରୀବାବୁଙ୍କ ଠାରେ ଯେଉଁ ମାନବିକତା ପ୍ରକାଶ ପାଇଛି ତାହାର ସୁପ୍ରତୁଳ ସ୍ୱରୂପ ଦୃଷ୍ଟିଗୋଚର ହୁଏ ବୀରବାହାଦୁର୍ ଚରିତ୍ରରେ ।

ବୀରବାହାଦୁର୍ ହେଉଛି କଲେଜ ହତାରେ ଜହ୍ନରାତି ଗଳ୍ପର ଚରିତ୍ର । ସେ କଲେଜର ରାତ୍ରି ଜଗୁଆଳ । ତା'ର ପ୍ରକୃତ ଚରିତ୍ରକୁ କେହି ନ ବୁଝି ତାକୁ ତାନ୍ତ୍ରିକ ଓ ଦୁଶ୍ଚରିତ୍ର ବ୍ୟକ୍ତିର ଆଖ୍ୟା ଦିଆଯାଇଛି । ତନ୍ତ୍ର ଦ୍ୱାରା ସେ ଜଣେ ଯୁବ ଅଧାପକ ଓ ଛାତ୍ରୀକୁ ବିପଥଗାମୀ କରିବାର ଅଭିଯୋଗ ଅଧକ୍ଷଙ୍କ ନିକଟରେ ହୋଇଛି ।

ଅଧ୍ୟକ୍ଷ ତଦନ୍ତର ଦାୟିତ୍ୱ ନେଇ ଦେଖନ୍ତି ତ ତା' ସମ୍ମୁଖରେ ଦୁଇହଳ ଜ୍ୱଳନ୍ତ ଆଖି ବିଦ୍ୟମାନ । କିନ୍ତୁ ତାଙ୍କର କ୍ରୋଧିତ ସ୍ୱରରେ ଆଖି ଦୁଇଯୋଡ଼ି ଉଭାନ୍ ହେବାରୁ ଅଧ୍ୟକ୍ଷଙ୍କ ସନ୍ଦେହ ଦ୍ୱିଗୁଣିତ ହୋଇଛି । ଅଧ୍ୟକ୍ଷଙ୍କୁ ଶାନ୍ତ କରାଇ ବାହାଦୁର ଗୁଣୁଗୁଣୁ ହେବାରୁ ପୂର୍ବୋକ୍ତ ଆଖି ଦୁଇଯୋଡ଼ିର ପୁନଃ ଆବିର୍ଭାବ ହୋଇଛି । ତାହା ଦୁଇଟି କୋକିଶିଆଳି ଜାଣି ଅଧ୍ୟକ୍ଷ ବିସ୍ମୟ ପ୍ରକାଶ କରିଛନ୍ତି । ଅଧ୍ୟକ୍ଷଙ୍କ ବିସ୍ମୟକୁ ବିଦୂରିତ କରି ବାହାଦୁର ସେଠାରେ ପାଞ୍ଚବର୍ଷ ପୂର୍ବେ ଜୀବିତ ଥିବା ପଶୁଙ୍କ ମଧ୍ୟରୁ ଏ ଦୁଇଟି ମାତ୍ର ତା'ର ବନ୍ଧୁ ହୋଇ ରହିଛନ୍ତି ବୋଲି ପ୍ରକାଶ କରିଛି । ଏତଦ୍‌ବ୍ୟତୀତ ସେ ମଧ ଅଧ୍ୟକ୍ଷଙ୍କୁ ଜଣାଇ ଦେଇଛି– "ସାର୍, ଯୋଉଦିନ ମୋତେ ନିକାଲି ଦେବେ ନୌକରୀରୁ, ଉସିଦିନ ଓଭି ମର୍‌ଯାଏଙ୍ଗେ ! ଏ କଲେଜମେ ଉନ୍ ଦୋନୋକା ଔର୍ କେହି ଦୋସ୍ତ୍ ନାହାନ୍ତି–ସିରିଫ୍ ମୋ ଛଡ଼ା... ମୁହିଁ ତାଙ୍କର ଦୋସ୍ତ !"' ବାହାଦୁର ନିଜ ଚାକିରିରୁ ବାହାର ହେବାକୁ ଯେତେ ଦୁଃଖିତ ନୁହେଁ ସେମାନଙ୍କୁ ବଞ୍ଚାଇବା ନିମନ୍ତେ ଅଧିକ ଉତ୍କଣ୍ଠିତ । ବୀରବାହାଦୁର ଚରିତ୍ରରୁ ତା'ର ସମ୍ବେଦନଶୀଳତାର ଗଭୀରତା ସହଜରେ ଅନୁମିତ ।

ଚଳନ୍ତି ଠାକୁର ଗଳ୍ପ ସଂକଳନଟି ବିଶେଷତଃ ସହରୀ ଚରିତ୍ରମାନଙ୍କୁ ନେଇ ରଚିତ । ସହରୀ ପୁରୁଷମାନଙ୍କ ନୈତିକତାର ଅବକ୍ଷୟକୁ ଦେଖାଇ ଦିଆଯିବା ସହିତ ମାନବିକ ଆଦର୍ଶ ପ୍ରତି ଗୁରୁତ୍ୱ ପ୍ରଦାନ କରାଯାଇଛି ।

## ନାରୀ ଚରିତ୍ର

ଚଳନ୍ତି ଠାକୁର ଗଳ୍ପ ସଂକଳନରେ ପୁରୁଷ ଚରିତ୍ରକୁ ଯେଉଁଭଳି ନିଖୁଣ ରୂପେ ଚିତ୍ରଣ କରାଯାଇଛି ନାରୀ ଚରିତ୍ରକୁ ମଧ୍ୟ ଆଲୋଚନା କରାଯାଇଛି । କିନ୍ତୁ ଏଥିରେ ନାରୀ ଚରିତ୍ର ଅପ୍ରତୁଳ, ସେମାନଙ୍କ ଭୂମିକା ମଧ୍ୟ ଅପ୍ରଧାନ । ତଥାପି ସେମାନଙ୍କ ମଧ୍ୟରୁ ଗ୍ରାମୀଣ ଓ ସହରୀ ପରିବେଶର କେତେକ ନାରୀ ଚରିତ୍ରର ବିଚାର କରାଯାଇପାରେ ।

ବୃକ୍ଷସାକ୍ଷୀ ଗଳ୍ପର ନାୟିକା ପେମି । କଣ୍ଡାପଡ଼ା ନାମକ ନିପଟ ମଫସଲରେ ତା'ର ଜନ୍ମ । ପିଲାବେଳରୁ ସେ ଥିଲା ମେଧାବିନୀ ଓ ନିଷ୍କଳଙ୍କିନୀ । ମାନସାଙ୍କ

ପ୍ରବୀଣା ପେମିକୁ ଗଣିତ ମାଷ୍ଟ୍ରେ ଥରେ ଥରେ ତା'ର ସହପାଠୀ ଗଣ୍ଡମୂର୍ଖ ଚନ୍ଦରା ଭୋଇର କାନ ମୋଡ଼ିବାକୁ କହିଲେ ମଧ୍ୟ ସେ ଅରାଜି ହୁଏ । କିନ୍ତୁ ହଠାତ୍ ଥରେ ଚନ୍ଦରାର କାନଧରି ଠାଏ କରି ଚାପୁଡ଼ାଏ କଷିଦେଇଛି । ଚନ୍ଦରା ତା'ର ମନ୍ଦ ବୁଦ୍ଧି ପାଇଁ ପେମି ହାତରୁ ମାଡ଼ ଖାଇଛି । ନିଷ୍କଳଙ୍କା ପେମି ପିଲାଦିନରୁ ଥିଲା ଉଗ୍ରସ୍ୱଭାବର । ବିବାହିତ ଜୀବନରେ ମଧ୍ୟ ତା'ର ଉଗ୍ର ସ୍ୱଭାବରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରାଯାଇ ନାହିଁ । ସେ ଯେଉଁ ଗାଁର ଝିଅ ସେହି ଗାଁରେ ବୋହୂ ହୋଇଛି । ପେମିର ପ୍ରକୃତି ପାଇଁ ସ୍ୱାମୀ ତାକୁ ଛାଡ଼ି ଅନ୍ୟତ୍ର ଚାଲିଯାଇଛି । ଏହା ମଧ୍ୟରେ ତା'ର ଉଦିଆ ନାମକ ପୁଅଟିଏ ହୋଇ ମରିସାରିଥାଏ । ପେମି ନିଃସହାୟ ହୋଇ ବାପଘରକୁ ଫେରିଆସେ । ତା'ର ବାପା ବିବାହିତ ଝିଅକୁ ଗ୍ରାମ ନିକଟରେ ପୁନଃବିବାହ ଦେବା କଷ୍ଟକର ଜାଣି ଦୂରସ୍ଥ ସ୍ଥାନରେ ପାତ୍ର ଯୋଗାଡ଼ କରିଛନ୍ତି । ବରପକ୍ଷ ପେମିର ସୌନ୍ଦର୍ଯ୍ୟ ଓ କାମିକା ଢଙ୍ଗ ଦେଖି ବୋହୂ କରିବାକୁ ରାଜି ହୁଅନ୍ତି । ମାତ୍ର ଦ୍ୱିତୀୟବାର ଆଉ ତାଙ୍କ ଘର ମାଡ଼ନ୍ତି ନାହିଁ । ଗ୍ରାମର ଖଳବ୍ୟକ୍ତି ପେମି ନାଁରେ ଖଚ ମିଛ କହି ବିବାହ ଭାଙ୍ଗିଦିଅନ୍ତି । ପେମି ଆଉ ବିବାହ କରିପାରେ ନାହିଁ । ସମୟକ୍ରମେ ପେମି ଗ୍ରାମର ସରପଞ୍ଚ ତଥା ତା'ର ଅତୀତର ସହପାଠୀ ଚନ୍ଦରା ବାଉରୀର ପ୍ରରୋଚନାରେ କଲିକତାର ନାରୀ ସମ୍ମିଳନୀରେ ଯୋଗଦେବାକୁ ଯାଇଛି । ସେଠାରେ ସେ ନିରୁଦ୍ଦେଶ ହୋଇଛି । କିନ୍ତୁ ହାବୁଡ଼ା ପୋଲରୁ ଡେଇଁପଡ଼ି ଆତ୍ମହତ୍ୟା କରିଛି ବୋଲି ଗ୍ରାମରେ ତା' ନାମରେ ଅପବାଦ ଉଠିଛି । ଏହାର ପାଞ୍ଚବର୍ଷ ପରେ କଣ୍ଢାପଡ଼ା ଗାଁ ମୁଣ୍ଡର ଖଜୁରିଗଛକୁ ତା'ର ଭୂତ ଲାଗିଛି ଏବଂ ଏହା ଚନ୍ଦ୍ରମଣିକୁ ସଞ୍ଚରିତ ହୋଇଛି । ଫଳରେ ଚନ୍ଦ୍ରମଣି ଗୁଡ଼ାଏ ଦୁର୍ବୋଧ୍ୟ ଭାଷା ବକିଚି । ତା'ର ଭାଷାକୁ ଭାଷା ଗବେଷଣାଗାରରେ ପରୀକ୍ଷା କରି ସାମ୍ବାଦିକମାନେ ସମ୍ବାଦପତ୍ରରେ ପେମିର ଭୂତ କଥାକୁ ପ୍ରକାଶ କରିଛନ୍ତି । ଭୂତ କଥାରୁ ଜଣାପଡ଼େ ଯେ ପେମିର ବିବାହ ଭାଙ୍ଗିବାଠାରୁ ତାକୁ କଲିକତାର ହାଡ଼କଟା ଗଳିରେ ଛାଡ଼ିଦେଇ ତା'ର ଆତ୍ମହତ୍ୟା ଘୋଷଣା କରିବା ଘଟଣାରେ ଚନ୍ଦ୍ରମଣି ହିଁ ଦାୟୀ । ହାଡ଼କଟା ଗଳିରୁ ପେମି ଜଣେ ମୁସଲମାନ ସୌଦାଗର ସହିତ ଆରବ ଚାଲିଯାଏ ଏବଂ ତା'ର ବେଗମ୍ ହୋଇ ରହେ । କିଛିଦିନ ପୂର୍ବରୁ ବୋମା ବିସ୍ଫୋରଣରେ ତା'ର ମୁସଲମାନ ସ୍ୱାମୀ ସହିତ ସେ ପ୍ରାଣ ହରାଇଥାଏ । ପେମିର ଭୂତ ଗାଁ'ବାଲାଙ୍କୁ ନାରୀମାନଙ୍କୁ ସ୍ୱାଧୀନତା ଦେବାପାଇଁ

ସୂଚାଇଦିଏ । ନାରୀମାନେ ନିର୍ଭୟରେ ହାଡ଼କଟା ଗଳିକୁ ଦେଖି ସେଠାରେ ବନ୍ଦୀ ଥିବା ନାରୀମାନଙ୍କୁ ମୁକ୍ତି ଦେବାକୁ ସେ କହିଛି । ସଚ୍ଚରିତ୍ର, କର୍ତ୍ତବ୍ୟପରାୟଣତା ଓ ସ୍ୱାଧୀନମନାର ନିଦର୍ଶନ ଦେଖିବାକୁ ମିଳେ ପେମିର ଚରିତ୍ରରୁ । ପେମିର ଭୂତ ଫାଣ୍ଟାସିଧର୍ମୀ ହେଲେ ମଧ୍ୟ ଦୁର୍ନୀତିଗ୍ରସ୍ତ ବ୍ୟକ୍ତିମାନଙ୍କର ମୁଖାବରଣକୁ ଉନ୍ମୋଚନ କରି ସେମାନଙ୍କ ଅସଲ ସ୍ୱରୂପକୁ ଦେଖାଇଛି ଏବଂ ନାରୀ ସ୍ୱାଧୀନତା କଥା କହିଛି ।

ସାଂପ୍ରତିକ ସମାଜରେ ପେମି ପରି ସରଳା ନାରୀ କାମୁକ, କପଟ ବ୍ୟକ୍ତିଙ୍କ ଦ୍ୱାରା ପ୍ରତାରିତ ହୋଇ ଅସହ୍ୟ ଦୁଃଖଯନ୍ତ୍ରଣା ଭୋଗ କରୁଥିବାବେଳେ କେତେକ କୁଟିଳା ନାରୀ କପଟୋକ୍ତିର ବଳରେ ଅନ୍ୟକୁ ପ୍ରଲୋଭିତ କରି ନିଜର ସ୍ୱାର୍ଥସିଦ୍ଧି ନିମନ୍ତେ ପ୍ରୟାସ କରନ୍ତି । ଏହିଭଳି ଏକ ପ୍ରତାରିକାର ନିଦର୍ଶନ ହେଉଛି ଗୀତା ।

ଟେଲିଫୋନ୍ କଲ୍-ଇଣ୍ଟରଭ୍ୟୁ ପୂର୍ବଦିନର ଗଳ୍ପରେ ଗୀତା ହେଉଛି ଏକ ଗୌଣ ଚରିତ୍ର । ଇଣ୍ଟରଭ୍ୟୁକାରୀ ଅଫିସର ନୃପେନସାହାଦେଓଙ୍କର ସେ ଥିଲା କଲେଜ ଜୀବନର ବାନ୍ଧବୀ । ଗୀତାର ପିତା ତତ୍‌କାଳୀନ ଡେପୁଟି ସେକ୍ରେଟେରୀ ତାକୁ ଦରିଦ୍ର ଘରର ପିଲା ନୃପେନ୍ ସହିତ ବିବାହ ଦେବାକୁ ରାଜି ନ ହୋଇ ତାଙ୍କ ସମାସ୍କନ୍ଧ ଡେପୁଟି ସେକ୍ରେଟେରୀଙ୍କର ପୁତ୍ର ସହିତ ଛନ୍ଦି ଦେଇଛନ୍ତି । କିନ୍ତୁ ଏଥିରେ ଗୀତାର ବିରୋଧଭାବ ପ୍ରକାଶ ନ ପାଇବା ତା'ର ଅନାବିଳ ପ୍ରେମକୁ ପ୍ରତ୍ୟାଖ୍ୟାନ କରେ । କିଛିଦିନ ପରେ ଗୀତାର ଡେପୁଟି ସେକ୍ରେଟେରୀ ସ୍ୱାମୀ ତାକୁ ଦୁଇଟି ପୁତ୍ର ସନ୍ତାନ ଉପହାର ଦେଇ ତା' ସହିତ ସମସ୍ତ ସମ୍ପର୍କ ଛିନ୍ନ କରିଛନ୍ତି । ଗୀତାର ବଡ଼ ପୁଅ ବି.ଏ ପାସ୍ କରି ନୃପେନ୍‌ଙ୍କ ଅଫିସରେ ପିଅନ ପୋଷ୍ଟ ପାଇଁ ଆବେଦନ କରିଛି । ସେଥି ନିମନ୍ତେ ଇଣ୍ଟରଭ୍ୟୁର ପୂର୍ବଦିନ ନିଶାର୍ଦ୍ଧରେ ନୃପେନଙ୍କୁ ଗୀତା ଦେବୀ ଟେଲିଫୋନ୍ କରିଛନ୍ତି । ଗୀତା ବିଭିନ୍ନ କଥା ପ୍ରସଙ୍ଗରେ ନୃପେନ୍‌ଙ୍କ ପ୍ରତି ତା'ର ପ୍ରେମ ଉଜ୍ଜୀବିତ ରହିଛି ବୋଲି ସବିନୟେ ଓ ସଚାତୁରେ ଜଣାଇ ଦେଇ ପ୍ରକାରାନ୍ତରେ ନିଜ ପୁଅକୁ ପିଅନ ପୋଷ୍ଟରେ ରଖିବା ନିମନ୍ତେ କହିଛି । ଗୀତାର ଚରିତ୍ରରୁ ତା'ର ସ୍ୱାର୍ଥପରଭାବ ପ୍ରକାଶ ପାଇଛି ।

ଉଗ୍ର ଜଡ଼ବାଦୀ ସଭ୍ୟତା ଗୀତାକୁ ଯେପରି ପ୍ରବଞ୍ଚିକାର ରୂପ ଦେଇଛି, ଭାରତୀୟ ନାରୀକୁ ମଧ୍ୟ ପାଷଣ୍ଡିନୀ କରିଛି । ଏହି ପରିପ୍ରେକ୍ଷୀରେ ସୀମାର ଚରିତ୍ରକୁ ଅନୁଶୀଳନ କରାଯାଇପାରେ ।

ଚଳନ୍ତି ଠାକୁର ଗଳ୍ପର ଗୌଣ ଚରିତ୍ର ହେଉଛି ସୀମା । ଆଇ.ଏ.ଏସ୍ ଅଫିସର ସିଦ୍ଧାର୍ଥର ସେ ଅନୁଜା । ଭଲ ଷ୍ଟୁଡେଣ୍ଟ୍ ନ ହୋଇଥିବାରୁ ସେ ବହୁ କଷ୍ଟରେ ବି.ଏ ପର୍ଯ୍ୟନ୍ତ ଯାଇଛି । ଏହି ସମୟରେ ତା'ର ବିବାହ ହୁଏ ଜୁନିୟର ଇଞ୍ଜିନିୟର ବିଜନ୍ ସେନାପତି ସହିତ । ବିଜନ୍ ଦରିଦ୍ର ଘରର ପିଲା ଓ ତା' ଭାଇ ତୁଳନାରେ ଛୋଟ ଚାକିରି କରିଥିବାରୁ ସୀମା ତା' ବିବାହରେ ମନ ଖରାପ କରି ସିଦ୍ଧାର୍ଥଙ୍କୁ ଗୁପ୍ତରେ ପଚାରେ– "ସତରେ ଭାଇ, ଯେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ହବାକୁ ଏତେଗୁଡ଼ାଏ ବର୍ଷ ଲାଗିବ– ତମେ କମିଶନର ହବାଯାକେ ? ଏ ବୋକା ଲୋକଟା ସାଙ୍ଗରେ ମୋତେ ଛନ୍ଦିଦେଲେ ଯେ ବାପା ?"[୩] ଆଖିରୁ ତା'ର ଧାରଧାର ହୋଇ ଅଶ୍ରୁ ଗଡ଼ିଯାଏ । ସର୍ବଦା ସେ ଦିଶେ କାନ୍ଦୁରା । କିନ୍ତୁ ବିଜନ୍ ଆମେରିକାସ୍ଥିତ ସୁପ୍ରସିଦ୍ଧ କମ୍ପାନିରେ ଯୋଗଦେବା ପରେ ତା'ର କାନ୍ଦୁରା ମୁଖରେ ହସ ଫୁଟିଛି । ଭୁବନେଶ୍ୱର ସହର ବୁଲିବାବେଳେ ସିଦ୍ଧାର୍ଥ ମିସ୍ଟୁନ୍‌ର ଜ୍ଞାନଦୀପ୍ତ ଚେତନାରେ ବିସ୍ମୟ ହୋଇ ସୀମା ମୁଖରୁ ଆବିଷ୍କାର କରିଛନ୍ତି ଆମେରିକାନ୍ 'ବ୍ରଡ୍ ସ୍ମାଇଲ୍' ଓ ମନେ ପକାଇଛନ୍ତି ସୀମାର ବିଗତ ମନସ୍ତାପକୁ । ଏଥିରୁ ତା'ର ସ୍ୱାର୍ଥପରତାର ସାନ୍ଦ୍ରତା ସହଜେ ଅନୁମେୟ । ଆମେରିକାର ରହଣିକାଳ ମଧ୍ୟରେ ସୀମାର ମୁଖରେ ଯେଉଁଭଳି ପ୍ରଫୁଲ୍ଲତା ଫୁଟିଉଠିଛି ସେହିପରି ମନରେ ତା'ର ମଧ୍ୟ ପ୍ରପଞ୍ଚ ଭାବ ସୃଷ୍ଟି ହୋଇଛି । ସେ ତା'ର ଭାଇକୁ ଭାରତର ଅମୂଲ୍ୟ କଳା ଗର୍ଭିତ ମୂର୍ତ୍ତିଗୁଡ଼ିକୁ ଆମେରିକାନ୍‌ମାନଙ୍କୁ ବିକ୍ରି କରିଦେବା ନିମନ୍ତେ ପ୍ରସ୍ତାବ ଦେଇଛି । ତା'ର ଏଭଳି କୁତ୍ସିତ ମନୋଭାବ ଦୂର ହୋଇଛି ମିସ୍ଟୁନ୍‌ର ନିଖୋଜ ହେବାରେ । ଅସହାୟ ଭାବରେ ମିସ୍ଟୁନ୍‌କୁ ପାଇବା ନିମନ୍ତେ ସେ ଭଗବାନଙ୍କୁ ଡାକିଛି । ଶେଷରେ ମିସ୍ଟୁନ୍‌କୁ ପାଇ ନିଜର ମନ୍ଦ ପ୍ରକୃତି ଲାଗି ଅନୁଶୋଚନା ପ୍ରକାଶ କରିଛି । ତା' ପୁଅ ମିସ୍ଟୁନ୍‌କୁ ଭଗବାନ କୋଟିପରମାୟୁ ଦେବା ନିମନ୍ତେ ଭାରତୀୟ ସାଧାରଣ ମାଆ ପରି ସେ ବାନ୍ଧୁନିଛି । ସ୍ୱାର୍ଥପରତା, ସଂଶୟାଚ୍ଛନ୍ନ ବିଭୁ ପ୍ରୀତି, ଅସହାୟତାକୁ ନେଇ ସୀମା ଚରିତ୍ର ସୃଷ୍ଟ ।

ମାଟିର ସ୍ୱପ୍ନ ଗଳ୍ପରେ ମଦନ ପାତ୍ରର ସ୍ତ୍ରୀ ଫୁଲରାଣୀ ଗ୍ରାମୀଣ ନାରୀ ଚରିତ୍ର । ପୋତାମାଲ୍ ବା ଅନାୟାସ ଲବ୍ଧ ଧନ ପାଇଁ ତା'ର ବ୍ୟାକୁଳତା ଦେଖାଦେଇଛି । କିନ୍ତୁ ଅଜିତ୍ ରାୟଙ୍କ ସମାଧି ସ୍ତୂପ ଗଳ୍ପରେ ଅଜିତ୍ ରାୟଙ୍କ ପତ୍ନୀ

ସହରୀ ନାରୀ ହୋଇ ମଧ୍ୟ ନିଜର ନିର୍ବୋଧତା ଓ ସରଳତା ଯୋଗୁଁ ପ୍ରତାରିତ ହୋଇ ସ୍ୱାମୀର କଳଙ୍କିତ ଧନକୁ ଅଯଥା ଖର୍ଚ୍ଚ କରିଛି ।

ମୋଟ୍ ଉପରେ କହିବାକୁ ଗଲେ ଚଳନ୍ତି ଠାକୁର ଗଳ୍ପ ସଂକଳନର ନାରୀମାନଙ୍କ ଠାରେ କୁଟିଳତା ଅପେକ୍ଷା ସରଳତାର ଆଧିକ୍ୟ ପରିସ୍ଫୁଟ ହୋଇଛି । କଲେଜ ହତାରେ ଜହ୍ନରାତି ଗଳ୍ପରେ ମାନବେତର ଚରିତ୍ର ଏବଂ ପ୍ରେମର ପ୍ରମାଣ, ଚଳନ୍ତି ଠାକୁର ଗଳ୍ପ ଦ୍ୱୟରେ ମାନବୋତ୍ତର ଚିତ୍ର କେବଳ ଯାହା ମୂର୍ଚ୍ଛିତ ହୋଇଛି ।

ଚଳନ୍ତି ଠାକୁର ଗଳ୍ପ ସଂକଳନର ଚରିତ୍ର ଓଡ଼ିଶା ପୃଷ୍ଠଭୂମିରେ କଳ୍ପିତ ହୋଇଥିଲେ ମଧ୍ୟ ସେମାନଙ୍କ ବ୍ୟକ୍ତିତ୍ୱରେ ସଂକୀର୍ଣ୍ଣତା ପ୍ରକଟିତ ହୋଇନାହିଁ । ବଳିଷ୍ଠ ମାନବୀୟ ସତ୍ତାର ପରିପ୍ରକାଶରେ ଚରିତ୍ରମାନେ ବେଶ୍ ସମର୍ଥ ।

**ଅନ୍ତଟୀକା :**


୧. ଶାନ୍ତନୁ କୁମାର ଆଚାର୍ଯ୍ୟ–ଚଳନ୍ତି ଠାକୁର, ପୃ.୧୦୨ ।

୨. ତତ୍ରୈବ, ପୃ.୮୨ ।

୩. ତତ୍ରୈବ, ପୃ.୨୫ ।




# ଭାଷାଶୈଳୀ ସଂଯୋଜନ

ଭାଷା ବ୍ୟତିରକେ ଗଳ୍ପ ରଚନା ସମ୍ଭବ ନୁହେଁ । ଭାଷା ହେଉଛି ଗଳ୍ପର ଅପରିହାର୍ଯ୍ୟ ଉପାଦାନ; ଯାହା ଗଳ୍ପର ସୃଷ୍ଟି ଓ ବୃଦ୍ଧିରେ ଗୁରୁ ଦାୟିତ୍ୱ ବହନ କରେ । ଭାଷା ଯଦି ହୁଏ ପ୍ରସ୍ତର, ତେବେ ଗଳ୍ପ ହେବ ପ୍ରାସାଦ । ଶିଳ୍ପୀ ପ୍ରାସାଦର ନକ୍‌ସା ଓ ନିଜର ରୁଚି ଅନୁଯାୟୀ ପ୍ରସ୍ତର ସଂଯୋଜନା କରେ । ଠିକ୍ ସେହିପରି ଗାଳ୍ପିକ ପରିବେଶ, ପରିସ୍ଥିତି ଓ ଚରିତ୍ରକୁ ନେଇ ଭାଷାର ବିନ୍ୟାସ ପାଇଁ ପ୍ରଚେଷ୍ଟା କରେ । ଭାଷାର ବିନ୍ୟସ୍ତ ପ୍ରଣାଳୀକୁ ଶୈଳୀ କୁହାଯାଏ ।

ଶୈଳୀ ଉପରେ ନିର୍ଭର କରେ ଭାଷାର ଆବେଦନ ଓ ଗାଳ୍ପିକଙ୍କ କୃତିତ୍ୱ । ଏପରିକି କୁତ୍ସିତ ଭାଷାକୁ ନିଜର କଳା କୌଶଳର ସ୍ପର୍ଶ ଦେଇ ଗାଳ୍ପିକ ହୁଏ ପ୍ରଶଂସିତ ଓ ଯୁଗଜୟୀ । ଏହିଭଳି ଜଣେ ଖ୍ୟାତନାମା ଗାଳ୍ପିକ ହେଉଛନ୍ତି ଶାନ୍ତନୁ କୁମାର ଆଚାର୍ଯ୍ୟ । ଯାହାଙ୍କ କୃତିରେ ସାଧାରଣ ଓ ଅସାଧାରଣ ଭାଷା ସହ ନିହାତି ଅଶ୍ଳୀଳ ବୋଧକ କଞ୍ଚା ଭାଷାର ପ୍ରୟୋଗ ଦେଖିବାକୁ ମିଳେ । "ଧୂଆଁଳିଆ ମାଟିଗନ୍ଧ ଥିବା ପଙ୍କୁଆ ଭାଷାରେ ତୁଚ୍ଛା ମିଛ ଓ ଆତ୍ମପ୍ରବଞ୍ଚନା ସବୁକୁ ଫୁଟାଇବା ପାଇଁ ପୁଣି କ୍ଳେଦାକ୍ତ ପୃଥିବୀର ପଚମାନ ଅଥଚ ଜୀବନର ମହିମ୍ନ ରୂପ ଗନ୍ଧକୁ ଲେଖିବା ପାଇଁ ସେ ସନ୍ତସନ୍ତିଆ ବସ୍ତି ଇଲାକାର ଉପାନ୍ତ ଆଇଁଷିଆ ଭାଷାରେ ତାଙ୍କ ଗଳ୍ପ, ଉପନ୍ୟାସ ସବୁ ଲେଖିଛନ୍ତି । ଏ ଶିଳ୍ପୀ ସେ ପାଇଁ ସମସ୍ତଙ୍କ ଭିତରେ କେମିତି ନୂଆ ଲାଗନ୍ତି । ଯେଉଁ ଭାବ ସେ ପୋତିଲେ ତା' ସେପରି ଅଦ୍ଭୁତ ନ ହେଲେ ହେଁ ଆମ ମାଟିରେ ତାହା ନୂଆ ଫଳିଛି ।"[୧]

ତାଙ୍କ ଗଳ୍ପରେ ନିପଟ ମଫସଲଠାରୁ ଆରମ୍ଭ କରି ସହର ତଳି ଅଞ୍ଚଳର ଜନତାଙ୍କ ଭାଷା ଦେଖିବାକୁ ମିଳେ । ସେ ଅବକ୍ଷୟ ଜୀବନର ସ୍ୱରୂପ ପ୍ରକାଶ କରିବା ସହିତ ଚିରନ୍ତନ ଜୀବନ ସତ୍ୟର ଅନ୍ୱେଷା କରିଛନ୍ତି । ଜୀବନବାଦୀ ଗାଳ୍ପିକ ଶାନ୍ତନୁ ଆଚାର୍ଯ୍ୟଙ୍କ କୃତିରେ ଭାଷା ହୋଇଛି ମାନବ ଅନ୍ତରର ନିଛକ ପ୍ରତିଛବି । ତାଙ୍କ କୃତିରାଜିର କ୍ରମ ଉତ୍ତରଣରେ ପରିଦୃଷ୍ଟ ହୁଏ ଭାଷା ଓ ଏହାର ପ୍ରକାଶନ ଶୈଳୀର ପରିମାର୍ଜିତ ରୂପ । ଗଳ୍ପ ସଂକଳନ 'ଚଳନ୍ତି ଠାକୁର'ରୁ ତାଙ୍କ ଭାଷା ଶୈଳୀର ରୂପକୁ ଦେଖିବାକୁ ମିଳେ ।

ଚଳନ୍ତି ଠାକୁର ଗଳ୍ପ ସଂକଳନରେ ଗ୍ରାମର କୃଷକଠାରୁ ଆରମ୍ଭ କରି ସହରର ଉଚ୍ଚ ପ୍ରଶାସନିକ ଅଫିସରଙ୍କ ଭାଷା-ଶୈଳୀ ବ୍ୟବହୃତ । ଏମାନଙ୍କ ସାଧୁ ଓ ଅସାଧୁ, ସ୍ୱଦେଶୀ ଓ ବିଦେଶୀ ଭାଷା ସହ ନର ଓ ନାରୀଙ୍କ ଭାଷା ଶୈଳୀରେ ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ଅନୁମେୟ । ଏସବୁ ଏଠାରେ ବିଚାର ସାପେକ୍ଷ ହୋଇଥିବାରୁ ପ୍ରଥମେ କେତୋଟି ଗ୍ରାମୀଣ ପୁରୁଷଙ୍କ ଭାଷାଶୈଳୀର ଉଦାହରଣ ଦିଆଯାଇପାରେ ।

ପିତୃଋଣ ଗଳ୍ପରେ ଗ୍ରାମୀଣ ପୁରୁଷ ଲୋକମାନେ ସୁଭଦ୍ରାର ପାପଗର୍ଭ ନିମନ୍ତେ ପ୍ରତିକ୍ରିୟାଶୀଳ ହୋଇ କଟୂ ମନ୍ତବ୍ୟ ଦେବାର ଗଳ୍ପଭାଷା ହେଲା– "ଆରେ କିଏସେ ଏମିତି ବିରିଣା କାମ କଲା ? ବାହାରି ଆସୁନାଇଁ କାହିଁକି ସେ ? ମୁହଁ ଖୋଲି କହି ଦେଉନି କାହିଁକି ଯେ ! ଆରେ ଖୋଜ ସେ ଶଳା ଚଣ୍ଡାଳକୁ, ଯିଏ ସେ କାମ କରିଛି ! ଧର ସେ ଶଳାକୁ–ସିଧା ଫୋପାଡ଼ି ଦିଅ ବଢ଼ିଲା ନଈକୁ । ମରନ୍ତୁ ଦିହିଁଙ୍କି ଦିହେଁ । ପାପ ନିର୍ମୂଳ ହେଉ । ଓ ହୋ, କି ପାପ ନ ଦେଖିଲା ଏ ଆଖି ! କଳଙ୍କିନୀଟା କେଡ଼େ ପାପିନୀ ଦେଖତ ! ବୁଢ଼ି ମରିବାକୁ ଗଲା; ଆଖର ବୁଢ଼ିଯାଉନି କି ମରୁନାଇଁ । ନିର୍ଲଜ୍ଜା ପୁଣି ପହଁରୁଛି ! ଛି, ଛି, ଛି... ।"[୨]

ବୃକ୍ଷସାକ୍ଷୀ ଗଳ୍ପରେ ଗ୍ରାମ୍ୟ ସରପଞ୍ଚ ଚନ୍ଦରା ଭୋଇ କଲିକତାର ନାରୀ ସମ୍ମିଳନୀରେ ଯୋଗଦେବାର କାର୍ଯ୍ୟକ୍ରମ ସଂପର୍କରେ ପେମିକୁ ବୁଝାଇ କହେ– "ବୁଝିଲୁ ! ରାଜନୀତିର କାମ ହେଲା ହାତ ଉଠାଇବା । ଦି' ଦି' ହାତ ଏକାବେଳକେ ଉପରକୁ ଉଠେଇ ମାଇପେମାନେ ଯେତେବେଳେ କଲିକତା ରାସ୍ତାରେ ଚାଲୁଥିବେ କେମିତି ଦିଶୁଥିବ ସେ ରାସ୍ତା ଭାବ । ମାଇକିନିଆଙ୍କ ଖଡୁମୁଷାକୁ କାହାର ଡର ନ ଥାଏ ! ଏଥର ଭୋଟ୍‌ରେ ମାଇକିନିଆଙ୍କ ଖଡୁମୁଷାର ପରାଭବ ଜଣାପଡ଼ିବ ।"[୩]

ପ୍ରେମର ପ୍ରମାଣ ଗଳ୍ପରେ ଗ୍ରାମର ଜଣେ ଯୁବକ ବଳଭଦ୍ର ବାବୁଙ୍କୁ ଗାଁରେ ଘର ପାଇଁ ଜାଗା କରାଇଦେବା ପ୍ରସଙ୍ଗରେ ତା'ର ସାଥୀ ଯୁବକଙ୍କୁ କହେ– "ଆବେ କିଣିବେ କଅଣ କହୁଚୁ! ଜମିଦାର ମଲେଣି। ଜମିଦାରି ଉଠିଗଲାଣି। ତାଙ୍କ ଖାନାବାଡ଼ି ସବୁ ପଡ଼ିଛି ଆଉ କାହା ପାଇଁ? ଏ ଶଳା ଚୁତିଆ ସରପଞ୍ଚ ପାଇଁ? ××× ନିଜ ନାଁ ଲେଖି ଜାଣି ନାଇଁ, ହେଲେ ଡେଲି ଲେଖାଯାଉଚି ଏତାଲା ଗାଁ ଫାଣ୍ଡିରେ-ମିଛ ଏତାଲା। ପୁଣି କାହା ନାଁ'ରେ– ଆମ ଭଳିଆ ପିଲାଙ୍କ ନାଁରେ; ଯେ ବି.ଏ ପାଶ୍ କରି ବେକାର! ଛିଃ ଛିଃ, ଶଳା କି ଯୁଗ ହେଲା ଏ! ହଁ ମଉସା, ଜମି ଆପଣଙ୍କର ଦରକାର?"୪

ଶାନ୍ତନୁ ଆଚାର୍ଯ୍ୟ ଗ୍ରାମୀଣ ପୁରୁଷମାନଙ୍କ ମୁଖରେ ସାମ୍ପ୍ରତିକ ଖାଣ୍ଟି ଗ୍ରାମ୍ୟଭାଷାକୁ ଫୁଟାଇ ପାରିଛନ୍ତି। ପୁରୁଷୋପଯୁକ୍ତ ଭାଷାର ଗାମ୍ଭୀର୍ଯ୍ୟତା ଓ ଶବ୍ଦ ସଂଯୋଜନା ଏସବୁରେ ସ୍ପଷ୍ଟ ପରିଲକ୍ଷିତ ହୋଇଛି। ଶଳା, ରାଣ୍ଡୀ, ଚୁତିଆ ଆଦି ଶବ୍ଦ ସାଧାରଣ ଅର୍ଥରେ ଅଶିଷ୍ଟ ବୋଲି ବିବେଚିତ ହୋଇଥିଲେ ମଧ୍ୟ ତାଙ୍କ ଗଳ୍ପର ସ୍ୱକୀୟ କଳା ମୂଲ୍ୟରେ ହୋଇଛି ଶିଷ୍ଟ।

ନିପଟ ଓଡ଼ିଆ ଭାଷାର ଅକ୍ଷୁଣ୍ଣ ରୂପ ଦେଖିବାକୁ ମିଳେ ଶାନ୍ତନୁଙ୍କର ଗ୍ରାମୀଣ ନାରୀ ଚରିତ୍ର ମୁଖରେ। ଏହାର କେତେକ ଦୃଷ୍ଟାନ୍ତ ଦିଆଯାଇ ପାରେ।

ପିତୃରଣ ଗଳ୍ପରେ ଘଡ଼ିମୂଳ ଗ୍ରାମର ଉତ୍ପୀଡ଼କ କ୍ଷୀର ସାଆଁତରା ମୃତ୍ୟୁକୁ ସମର୍ଥନ ଜଣାଇ ଗାଉଁଲି ସ୍ତ୍ରୀ ଲୋକଙ୍କର ଶମ୍ପା ସଂପର୍କରେ କଥାକାର କହନ୍ତି– "କ୍ଷୀର ସାଆଁନ୍ତରା ମଲାବେଳକୁ ଲୋକେ କଥା ବଦଳେଇ ଦେଲେ। କିଏ କହିଲା ଚୋର, କିଏ କହିଲା ଖଣ୍ଟ କିଏ କହିଲା ଡାକୁ। ଗାଁ ମାଇପେ 'ବାଡ଼ିଖିଆ ଯୋଗନୀଖିଆ ମଲା, ଭଲ ହେଲା' କହି ଗ୍ରାମ ଦେବତୀଙ୍କୁ ମୁଣ୍ଡିଆ ମାଇଲେ।"୫

ଆଜିର ବିଜ୍ଞାନ ଯୁଗରେ ବି ଭୂତପ୍ରେତର ବିଶ୍ୱାସ ଉଜ୍ଜୀବିତ ହୁଏ ଗ୍ରାମର ସାଧାରଣ ଜନତାଙ୍କ ମାନସପଟରେ। ବୃକ୍ଷସାକ୍ଷୀ ଗଳ୍ପରେ କଣ୍ଟାପଡ଼ା ଗ୍ରାମର ସ୍ତ୍ରୀ ଲୋକମାନେ ଖଜୁରି ଗଛକୁ ପେମିର ଭୂତ ଲାଗିବାର ବିଶ୍ୱାସ କରି କଥା ହୁଅନ୍ତି– "ଉଦିଆବୋଉକୁ ଦେଖି ନା? ଡେଙ୍ଗା ସରସର। ମୁଣ୍ଡରେ ମୁଣ୍ଡେ ବାଳ। ଗାଧୋଇ ସାରି ତଳକୁ ନଇଁପଡ଼ି ମୁଣ୍ଡ ଝାଡ଼ିଲା ବେଳେ ଦେଖିନ କେମିତି ଦେଖାଯାଏ ସେ?

ଆଲୋ ହେ! ସତେ ତ! ଏ ମା! ଗଛଟାକୁ ଉଦିଆବୋଉ ଲାଗିଲା କି ଆଉ ?"[୬]

ମାଟିର ସ୍ୱପ୍ନ ଗଳ୍ପରେ ମଦନ ପାତ୍ର ପୋତାମାଲ ପାଇ ତାକୁ କେଉଁଠି ରଖିବା ନିମନ୍ତେ ଭାଳି ହେଉଥିବା ବେଳେ ତା' ସ୍ତ୍ରୀ କହେ– "ମରଦଟାଏ ହେଇଚ, ମୁଣ୍ଡରେ ବୃଦ୍ଧି ନାହିଁ? ରଖିବ କୋଉଠି ଭାଳେଣି ପଡ଼ିଛି ? ଇଶାଣ କଣରେ, ହାଣ୍ଡିଶାଳରେ ଗାତ ଖୋଳି ପୋତି ପକାଅ ।"[୭]

ଶାନ୍ତନୁ ଆଚାର୍ଯ୍ୟ ପୁରୁଷମାନଙ୍କ ମୁଖରେ ଗାଳିଗୁଲଜର ଭାଷା ପ୍ରୟୋଗ କରିଥିବା ବେଳେ ନାରୀମାନଙ୍କ ମୁଖରେ ଶମ୍ପାକଟାର ଭାଷା ଭରି ଦେଇଛନ୍ତି । କିନ୍ତୁ ଏସବୁ ଗଳ୍ପ ନିମନ୍ତେ ଅଶ୍ଳୀଳ ହେବା ପରିବର୍ତ୍ତେ ଶ୍ଳୀଳ ହୋଇଛି । ତାଙ୍କ ଗ୍ରାମୀଣ ନାରୀ ମୁଖର ଭାଷା ଓ କଥନଶୈଳୀ ବେଶ୍ ଜୀବନ୍ତ ହୋଇଛି ।

ଚଳନ୍ତି ଠାକୁର ଗଳ୍ପ ସଂକଳନରେ ଗ୍ରାମୀଣ ଚରିତ୍ରଙ୍କ ବ୍ୟତୀତ ସହରୀ ଚରିତ୍ରର ଉପସ୍ଥାପନ କରାଯାଇଛି । ଏହି ସହରୀ ଚରିତ୍ର ମଧ୍ୟରେ ଉଚ୍ଚ ପ୍ରଶାସନିକ ଅଧିକାରୀ ଆଇ.ଏ.ଏସ୍ ଅଫିସରଠାରୁ ଆରମ୍ଭ କରି ନୀଚ କର୍ମଚାରୀ ରାତ୍ରି ଜଗୁଆଳ ପର୍ଯ୍ୟନ୍ତ ଅନ୍ତର୍ଭୁକ୍ତ । ଏମାନଙ୍କ ମୁଖରେ ଓଡ଼ିଆ ଭାଷା ସହିତ ହିନ୍ଦୀ, ଇଂରାଜି ଭାଷାର ପ୍ରାବଲ୍ୟ ପରିଲକ୍ଷିତ । ଏହାର କେତୋଟି ନିଦର୍ଶନ ନିମ୍ନରେ ଉଦ୍ଧୃତ ।

ଇଞ୍ଜିନିୟର ବିଜନ୍ ସେନାପତି ମନ୍ଦିର ସଂପର୍କରେ ତାଙ୍କର ଶିଶୁପୁତ୍ରକୁ ପରିଚିତ କରାଇଦେଇ କହନ୍ତି– "ଏଇଟା ଘର ନୁହେଁ, ସନ୍! ଏଇଟା ଗୋଟାଏ ପ୍ଲେସ୍ ଅଫ୍ ୱରସିପ୍ । ଏଠି ଗଡ୍ ଥାଆନ୍ତି । ଏ ହେଉଛି ଆମ ହିନ୍ଦୁମାନଙ୍କର ଟେମ୍ପ୍ଲ । ଏଇଟା ଗୋଟାଏ ଭେରି ଆନ୍‌ସିଏଣ୍ଟ ଟେମ୍ପ୍ଲ । ଫିଫ୍‌ଥ୍ ସେଞ୍ଚୁରି ଏ.ଡିର ।"[୮]

ଉତ୍କଳୀୟ ରକ୍ତ ପ୍ରବାହିତ ଆମେରିକାର ଜଳବାୟୁରେ ବଢ଼ିଥିବା ପାଞ୍ଚବର୍ଷ ବୟସ୍କ ଶିଶୁ ମିସ୍କୁନ୍ ନିଜ ମାତୁଳ ସିଦ୍ଧାର୍ଥଙ୍କ 'ମୃତ-ଦେବତା' କଥାରେ ବିସ୍ମୟ ପ୍ରକାଶ କରି ଆମେରିକୀୟ କଥାବାର୍ତ୍ତା ଶୈଳୀକୁ ନେଇ ଓଡ଼ିଆରେ ପ୍ରଶ୍ନ କରେ– "ଗଅଡ୍ ଗୁଡ଼ାକ ମରିଯାଇଛନ୍ତି ? ଏଟା ତେବେ ଗୋଟିଏ ସିମେଟରି ଅଙ୍କଲ ? ଗଅଡ୍‌ମାନଙ୍କର ?"[୯]

ହିନ୍ଦୀ, ଇଂରାଜି, ସଂସ୍କୃତ ଶବ୍ଦ ସମ୍ମିଶ୍ରିତ ଭାଷାର ଏକ ଦୃଷ୍ଟାନ୍ତ ମିଳେ ଗ୍ଲାସ୍‌ନଷ୍ଟ ଗଳ୍ପରେ । ହିନ୍ଦୀ ଭାଷୀ ଚପରାଶୀଠାରୁ ଅଫିସ୍‌ରେ ଖୁନ୍ କଥା ଶୁଣି ଆଇ.ଏ.ଏସ୍ ଅଫିସର୍ ଅର୍ଦ୍ଧେନ୍ଦୁ ଚିନ୍ତା ପ୍ରକଟ କରିଛନ୍ତି– "ଆରେ ଚଲ୍-ଖୁନ୍! ଇଧର କାହାଁ ଆଏଗା ଖୁନ୍! ବଡ଼ା ସାହାବ ତ କହତେ ହେଁ କି ରିଭଲ୍ୟୁସନ୍ ଖତମ୍ ହୋ ଚୁକା । ୟେ ଅବି ଚଲ୍ ରାହାହେ ପୋଷ୍ଟ-ରିଭଲ୍ୟୁସନାରୀ ପିଇସ ଟାଇମ୍! ସବ୍ ଠିକ୍ ହୈ..... ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ!"[୧୦]

ଅଧା ଓଡ଼ିଆ ଅଧା ହିନ୍ଦୀରେ ପ୍ରକାଶିତ ଭାଷା ପରିଦୃଶ୍ୟ ହୁଏ କଲେଜ ହତାରେ ଜହ୍ନରାତି ଗଳ୍ପରେ । ଅଧ୍ୟକ୍ଷକଙ୍କ ସନ୍ଦେହକୁ ଦୃଢ଼ୀଭୂତ କରି ରାତ୍ରି ଜଗୁଆଳ ବୀରବାହାଦୁର କହେ– "ସାର୍, ଗୋଟାକର ନାମ ଅମିତାଭ ବଚ୍ଚନ ଔର ଦୁସ୍‌ରାଟା ଜୟା ଭାଦୁଡ଼ି !"[୧୧]

ଜନଗଣଙ୍କ ମନ ଓ ତା'ର ଅଧିନାୟକ ଗଳ୍ପରେ ଜଣେ ବୁଲା ବେପାରୀର ସାହିତ୍ୟିକ ଭାଷା ଓ କାବ୍ୟିକ ସ୍ୱର ହେଲା– "ଏଇ ଦେଖନ୍ତୁ ଆସିଗଲା ବମ୍ବେର ସୁଖ୍ୟାତ କଳାକାର ଅପାଲା ସ୍ୱାମୀ ନାଇଡୁଙ୍କ ଯୁଗପତ୍ ସୃଷ୍ଟିର୍ ଚରମ କୃତିତ୍ୱର ଏଇ ଚମତ୍କାର ନମୁନା! ଧାତୁ ବିଦ୍ୟା ଉପରେ ଅନ୍ୟୁନ ଦଶବର୍ଷର ପ୍ରଗାଢ଼ ଗବେଷଣାର ଯୁଗାନ୍ତକାରୀ ସୁଫଳର ଜ୍ୱଳନ୍ତ ପ୍ରମାଣ– ଏଇ ନେକ୍‌ଲେସ୍... ମାନନୀୟ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳାଗଣ... ।"[୧୨]

ସହରୀ ସଭ୍ୟତାର ବିଭିନ୍ନ ଶ୍ରେଣୀର ପୁରୁଷ ମୁଖରେ ଉପଯୁକ୍ତ ଭାଷା ଓ କଥନଶୈଳୀ ଖଞ୍ଜିଦେଇ ଗାଳ୍ପିକ ତାଙ୍କ କୃତିତ୍ୱର ପରାକାଷ୍ଠା ଦର୍ଶାଇଛନ୍ତି । ଏତଦ୍ ବ୍ୟତୀତ ସହରୀ ସ୍ତ୍ରୀ ଲୋକମାନଙ୍କ ଭାଷାଶୈଳୀ ସମ୍ବନ୍ଧରେ କିୟତ୍ ଆଲୋକପାତ କରାଯାଇପାରେ ।

ସହରୀ ଉଚ୍ଚଶିକ୍ଷିତ ହାସ୍ୟମୟୀ, ଲାସ୍ୟମୟୀ ନାରୀର ଭାଷାରେ ପ୍ରବାହିତ ହୁଏ କାବ୍ୟିକ ଭାଷାର ସୌକୁମାର୍ଯ୍ୟ । ଏହାର ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ ଟେଲିଫୋନ୍ କଲ୍ ଇଣ୍ଟରଭ୍ୟୁ ପୂର୍ବଦିନର ଗଳ୍ପରେ । ଏଥିରେ ଅଫିସର୍ ନୃପେନ୍ ସାହାଦେଓଙ୍କ କଲେଜ ଜୀବନର ବାନ୍ଧବୀ ରୀତାଦେବୀ ନିଶାର୍ଦ୍ଧରେ ଫୋନ୍ କରି କହନ୍ତି– "ନୃପ୍ !

ମହାରାଣୀଙ୍କ ଆଲିଙ୍ଗନ ଭିତରେ ସୁଖ ନିଦ୍ରାରେ ଶୋଇଥିବା ବେଳେ ମୋର ଏ ଅନଧିକାର ପ୍ରବେଶକୁ ତୁମେ ନିଶ୍ଚୟ କ୍ଷମା କରିବ ନାହିଁ ଜାଣେ ମୁଁ ନୃପ୍! କିନ୍ତୁ କାହିଁକି କେଜାଣି ବିଗତ ଦୀର୍ଘ ତିରିଶି ବର୍ଷ ଧରି ରାତିର ଏଇବେଳେ ମତେ ଲାଗେ ଯେମିତିକି ତମେ ମୋତେ ଖୋଜୁଛ, ଖୋଜିଚାଲିଚ, ଅଧୀର ହୋଇ ଡାକୁଥାଅ ମଧ ମୋର ଅସଂଖ୍ୟ ନାଁ ଧରି– ସେଇ ଯୋଉ ଅଜବ ନାଁ ସବୁ ତମେଇ ସୃଷ୍ଟି କରିଥିଲ, ମନେଅଛି ନା?"[୧୩]

ସହରୀ ସଭ୍ୟତାରେ ବି ସ୍ୱଚ୍ଛ ଶିକ୍ଷିତ ସରଳ ବିଶ୍ୱାସୀ ସ୍ତ୍ରୀ ଲୋକଙ୍କର ଅଭାବ ନାହିଁ। ଅଜିତ୍ ରାୟଙ୍କ ସମାଧିସ୍ତୂପ ଗଳ୍ପରେ ଅଜିତ୍‌ବାବୁଙ୍କ ପତ୍ନୀ ପିଅନ ନଟ ମଳିକର ଧୂର୍ତ୍ତତାରେ ଶିକାର ହୋଇ ସ୍ୱାମୀଙ୍କୁ କହନ୍ତି– "ତମ ସାଙ୍ଗରେ ଲଢୁ ନ ଥେଲେ ପଞ୍ଚାଟାଏ? ତମକୁ କ'ଣ ଡେପୁଟି ସେକ୍ରେଟେରୀ କରାଇ ଦେଇଥାନ୍ତେ କି? ନଟ ମଳିକର ସବୁଠେଇଁ କି ଯା'ଆସ ଅଛି। ସେ ମନ୍ତ୍ରୀ କି ଚିହ୍ନେ, ବାବାଜିଙ୍କୁ ଚିହ୍ନେ। ମନ୍ତ୍ରୀକୁ ଦେଇଥିଲେ ଲକ୍ଷେ ପଡ଼ିଥାନ୍ତା। ବାବାଜିଙ୍କୁ ମୋଟେ ପାଞ୍ଚ ହଜାର ପଡ଼ିଲା। ନଟ ମଳିକ ବାବାଜିକୁ ଆଣିଥିଲା ଯେ! ଭାରି ଭଲ ବାବାଜି। ତାଙ୍କରି ମନ୍ତରେ ସାଧ ପଡ଼ିଲେ ସିନା ତମ ଶତ୍ରୁମାନେ! ତମେ ଜାଣ କ'ଣ?"[୧୪]

ଗୋଟିଏ ପରିବେଶରେ ସ୍ତ୍ରୀ ଓ ପୁରୁଷ ପ୍ରତିପାଳିତ ହେଲେ ମଧ ସେମାନଙ୍କ ଉଚ୍ଚାରଣରେ ପାର୍ଥକ୍ୟ ପରିଲକ୍ଷିତ ହେବା ସହ ଭାଷାରେ ସାମାନ୍ୟ ତାରତମ୍ୟ ପରିଦୃଷ୍ଟ ହୁଏ। ସହୃଦୟ ପାଠକ ଗଭୀର ମନୋନିବେଶ ସହ ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପରାଜିକୁ ପାଠକଲେ ଏହା ଉପଲବ୍ଧି କରିବା ସହଜସାଧ ହୁଏ।

ଶାନ୍ତନୁ ଆଚାର୍ଯ୍ୟଙ୍କ ଗ୍ରାମୀଣ ଚରିତ୍ରମାନେ ଖାଦ ବିଯୁକ୍ତ ଓଡ଼ିଆ ଭାଷାର ବ୍ୟବହାର କରୁଥିବାବେଳେ ସହରୀ ଚରିତ୍ରମାନେ ଖାଦପ୍ରଯୁକ୍ତ ଓଡ଼ିଆ ଭାଷାର ପ୍ରୟୋଗ କରି ଗାଳ୍ପିକଙ୍କୁ ଯୁଗଜୟୀ କରିଛନ୍ତି।

"ଭାଷା ପ୍ରୟୋଗର ପାରିଦର୍ଶିତା ମୂଳରେ ରହିଛି ଗାଳ୍ପିକଙ୍କର ବ୍ୟକ୍ତିଗତ ଅନୁଭୂତି। ନ' ବର୍ଷ ବୟସରେ ମାତୃ ବିୟୋଗ ପରେ ତାଙ୍କ ଘରେ ଜଣେ ଚାଷୁଣୀ ଦ୍ୱାରା ସେ ଲାଳିତପାଳିତ ହୋଇଥିଲେ। ଚାଷୁଣୀ ଅଶିକ୍ଷିତ ଥିଲେ ମଧ ପ୍ରଖର

ବୁଦ୍ଧିମତୀ ହୋଇଥିବାରୁ ସେ ତା'ଠାରୁ ନିତାନ୍ତ ଗ୍ରାମୀଣ ଅଚଞ୍ଚ ଭାଷା ଶିକ୍ଷା କରିଥିଲେ । ପୁନଶ୍ଚ ବ୍ରାହ୍ମଣ ପରିବାର ଓ ପରିବେଶରେ ବାଲ୍ୟ ଆଉ କୈଶୋର ଅତିବାହିତ କରିଥିବା ସହିତ 'ଭାଷାକୋଷ' ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ସଂପର୍କୀୟ ହୋଇଥିବାରୁ ଆଭିଜାତ୍ୟ ଓଡ଼ିଆ ଭାଷାର ଆହରଣ ତାଙ୍କ ପକ୍ଷେ କଷ୍ଟସାଧ ନ ଥିଲା ।"[୧୫] ଏତଦ୍ ଭିନ୍ନ ବିଭିନ୍ନ ସ୍ଥାନର ଚାକିରି କ୍ଷେତ୍ର ଅନୁଭୂତିରୁ ସେ ଲାଭ କରିଥିଲେ ଇଂରାଜି ଓ ହିନ୍ଦୀ ଭାଷା । ତେଣୁ ତାଙ୍କ ରଚନାରେ ସହରୀ ଓ ମଫସଲୀ ଭାଷାର ସୁସମନ୍ୱୟ ପରିଦୃଷ୍ଟ ।

ଚଳନ୍ତି ଠାକୁର ଗଳ୍ପ ସଂକଳନର ଅଧିକାଂଶ ସ୍ଥାନରେ ପ୍ରଥମ ପୁରୁଷ ଏକବଚନ ଶୈଳୀରେ ଗାଳ୍ପିକଙ୍କ ମନ୍ତବ୍ୟ ପ୍ରଦର୍ଶନ ହୋଇଛି । ଗାଳ୍ପିକ ନିଜେ ଚରିତ୍ର ହୋଇ ବେଶ୍ ସ୍ୱଭାବ ସୁଲଭ ଢଙ୍ଗରେ ଭାଷା ବ୍ୟବହାର କରିଛନ୍ତି ।

ଶାନ୍ତନୁ ଆଚାର୍ଯ୍ୟଙ୍କ ସାମ୍ବାଦିକ ଭାଷାଶୈଳୀର ପରିଚୟ ମିଳେ ବୃକ୍ଷସାକ୍ଷୀ ଗଳ୍ପରୁ । ଗଳ୍ପର ଖଳନାୟକ ଚନ୍ଦରା ଭୋଇକୁ ଭୂତ ଲାଗିଥିବା ସମୟର ଭାଷା ସମ୍ବାଦପତ୍ରରେ ପ୍ରକାଶ ପାଇଛି । ଗଳ୍ପ ଭାଷାରେ ତାହା ହେଲା– "ବୈଜ୍ଞାନିକଙ୍କ ଭୂତ ବିଶ୍ୱାସ – ବୈଜ୍ଞାନିକମାନେ ଭୂତ ପ୍ରେତରେ ବିଶ୍ୱାସ କରନ୍ତି ନାହିଁ– ଏହା ଜଣାଶୁଣା । କିନ୍ତୁ ଅଧୁନା ଏମିତି କେତେଟା ଅବାସ୍ତବ ଘଟଣା ସାରାବିଶ୍ୱରେ ଘଟିବାର ପ୍ରମାଣ ମିଳୁଛି, ଯେଉଁଥିରୁ ଭୂତ ପ୍ରତି ବୈଜ୍ଞାନିକମାନଙ୍କ ଅବିଶ୍ୱାସ କ୍ରମଶଃ ତୁଟିବାରେ ଲାଗିଛି । ଅଳ୍ପଦିନ ତଳେ କଣ୍ଟାପଡ଼ା ବୋଲି ଗୋଟିଏ ଗାଁ'ରେ ଏକ ଅଘଟଣ ଘଟିଯାଇଛି । ଗୋଟିଏ ଖଜୁରିଗଛର ଅସ୍ୱାଭାବିକ ବ୍ୟବହାର ରିପୋର୍ଟ ପାଇ ବଡ଼ ବଡ଼ ବୈଜ୍ଞାନିକମାନେ ସେଠାକୁ ଯାଇଥିଲେ । ଗଛଟା ଦିନ ଦି'ପହର ହେଲେ ଆପେ ତଳକୁ ନଇଁପଡୁଥିଲା, ପୁଣି ସନ୍ଧ୍ୟାକୁ ସିଧା ହେଇଯାଉଥିଲା । ଏ କଥା ଚାଲିଥିଲା ବେଳେ ଜଣେ ସ୍ଥାନୀୟ ନେତାଙ୍କୁ ଭୂତ ଲାଗିଲା । ସେ ଘଟଣାସ୍ଥଳରେ ପହଞ୍ଚିଲାକ୍ଷଣି ଏକ ଅଜବ ଭାଷାରେ ବକ୍ତୃତା କରିବାକୁ ଆରମ୍ଭ କଲେ ।"[୧୬] ଏଥିରୁ ଗାଳ୍ପିକଙ୍କ ସାମ୍ବାଦିକତା ଭାଷାର ବିବରଣାତ୍ମକ ଶୈଳୀ ପ୍ରତୀୟମାନ ହୁଏ ।

ଉକ୍ତ ଗଳ୍ପ ଗ୍ରନ୍ଥରେ କେତେକ କ୍ଷେତ୍ରରେ ବର୍ଣ୍ଣନାତ୍ମକ ଶୈଳୀ ପରିଦୃଶ୍ୟ ହୁଏ । କଲେଜ ହତାରେ ଜହ୍ନରାତି ଗଳ୍ପରେ ଅଧକ୍ଷଙ୍କ ନୈଶ୍ୟ ଅଭିଯାନ ସମୟରେ

କଲେଜ ହତାର ବର୍ଣ୍ଣନା ଦେବାକୁ ଯାଇ ଗାଳ୍ପିକଙ୍କ ଭାଷା ହେଲା– "ସେ ଯୋଉଠି ଠିଆହୋଇ ତାଙ୍କ କଲେଜ କ୍ୟାମ୍ପସ୍‌ଟିକୁ ପର୍ଯ୍ୟବେକ୍ଷଣ କରୁଥିଲେ ସେଠୁ ବହୁଦୂର ପର୍ଯ୍ୟନ୍ତ ଗୋଟାଏ ବିସ୍ତୀର୍ଣ୍ଣ ପଡ଼ିଆ, କଲେଜ ପିଲାଙ୍କ ଖେଳପଡ଼ିଆ । ସେଇ ପଡ଼ିଆର ଉତ୍ତର କଡ଼ରେ ଠାଏ ଠାଏ ଗୋଟିଏ ଦୁଇଟି କ୍ୱାର୍ଟର୍‌ସ, ଯୋଉଠି ଅଧ୍ୟାପକ-ଅଧ୍ୟାପିକାମାନେ ରହନ୍ତି । ଏହାର ଦକ୍ଷିଣ କଡ଼ରେ କଲେଜ ବିଲ୍‌ଡିଂ । ପଶ୍ଚିମ ଓ ପୂର୍ବ ପଟେ ଦୁଇଟା ଛାତ୍ରାବାସ । ସେଥିଭିତରୁ ପଶ୍ଚିମପଟ ଛାତ୍ରାବାସଟି ହିଁ ଛାତ୍ରୀ ନିବାସ । କିନ୍ତୁ ଉତ୍ତର, ଦକ୍ଷିଣ, ପଶ୍ଚିମ ବା ପୂର୍ବ କୌଣସି ଦିଗରେ କୌଣସି ଘର ଭିତରେ ବା ବାହାରେ ଆଲୁଅଟିଏ ଜଳୁ ନ ଥିବା ଦେଖି ଅଧକ୍ଷ ଚୌଧୁରୀ ପୁଣି ଥରେ ହାତଘଡ଼ିକୁ ଚାହିଁଲେ । ଘଡ଼ିର ରେଡିୟମ୍ ଡାୟାଲ୍ ଭିତରୁ ସେ ସମୟ ପଢ଼ିଲେ–ଏଗାରଟା- ରାତି ଏଗାରଟା ।"[୧୭]

ପ୍ରେମର ପ୍ରମାଣ ଗଳ୍ପରୁ ଏକ କାବ୍ୟିକ ଭାଷାର ଉପସ୍ଥାପନ କରାଯାଇପାରେ । ଗଳ୍ପ ନାୟକ ବଳଭଦ୍ର ତାଙ୍କୁ ଢେଲା ମାରିଥିବା ଯୁବକମାନଙ୍କୁ ପ୍ରୀତିପୂର୍ଣ୍ଣ ସମ୍ଭାଷଣ କରି କହନ୍ତି– "ନିଅ–ଲୁଟିନିଅ ଏସବୁ ଅମୂଲ୍ୟ ପଦାର୍ଥଗୁଡ଼ିକୁ । ମୋ ପାଖରେ ଏତେଗୁଡ଼ାଏ ସମ୍ପତ୍ତି ଥିଲା ବୋଲି ମୋତେ ମଧ୍ୟ ମାଲୁମ୍ ନ ଥିଲା ବାବୁମାନେ । ଭଲ କଲ–ଅମୃତ ମାଠିଆକୁ ଢେଲାମାରି କଣା କରିଦେଲ । ଖୁବ୍ ଭଲ କଲ-ଏଥର ନିଅ–ବୋହିନିଅ-ଲୁଟିନିଅ-ଆଉ ଅପେକ୍ଷା କାହାକୁ ?"[୧୮]

ଗାଳ୍ପିକଙ୍କର ପ୍ରତୀକାତ୍ମକ ଭାଷାଶୈଳୀର କେତୋଟି ଦୃଷ୍ଟାନ୍ତ ଦିଆଯାଇପାରେ । ଅଗଷ୍ଟ ପନ୍ଦର ଗଳ୍ପରେ ଜୟନ୍ତବାବୁଙ୍କ ପୁତ୍ର ସୁବ୍ରତ ଆଇ.ଏ.ଏସ୍ ଚାକିରି ପ୍ରତି ବିତୃଷ୍ଣାଭାବ ପ୍ରଦର୍ଶନ କରି ତା'ର ପିତାକୁ କହିଥିବା କଥାର ଗଳ୍ପ ଭାଷା ହେଲା– "ବିଲାତି କୁକୁରଙ୍କୁ ରାସ୍ତାକୁ ଛାଡ଼ିଦେଲେ କ'ଣ ଦଶା ହୁଏ ତାଙ୍କର ଜାଣିଚଟି ବାପା ! ବିଲାତି ଲୋକେ କୁକୁର ପାଳିଥିଲେ । ସେମାନେ ଚାଲିଗଲେ । ରହିଗଲେ କୁକୁରମାନେ । ଘରଛାଡ଼ି ରାସ୍ତାରେ ବୁଲିଲେ । ସ୍ୱାଧୀନତାରୁ ଏତିକି ଲାଭ ହେଲା । ଏଇଲେ ଦେଶରେ ଦେଶୀ କୁକୁରଙ୍କ ଛୁଆମାନେ ବିଲାତି କୁକୁରଙ୍କ ଭଳି ଦିଶୁଛନ୍ତି ସିନା; କିନ୍ତୁ ବିଲାତି କୁକୁର ଘୁଅ ଖାଉ ନଥିଲେ । ଏମାନେ ସମସ୍ତେ ଘୁଅ ଖାଉଛନ୍ତି ।"[୧୯] ଏଠାରେ କୁକୁର ହେଉଛି ଭାରତୀୟ ଦୁର୍ନୀତିଗ୍ରସ୍ତ ଆଇ.ଏ.ଏସ୍ ଅଫିସରର ପ୍ରତୀକ ।

ଗ୍ଳାସ୍‌ନଷ୍ଟ ଗଳ୍ପର ପ୍ରତୀକାତ୍ମକ ଭାଷାଶୈଳୀର ଅନ୍ୟ ଏକ ଉଦାହରଣ ହେଲା– "ହାଇସ୍କୁଲରୁ କଲେଜ, କଲେଜରୁ ଚାକିରି ଆରମ୍ଭ । ପ୍ରାୟ ଦଶନ୍ଧିଟିଏ ପଦ୍ମଠାରୁ ବିଚ୍ୟୁତ ରହିଗଲା ପରେ ଅର୍ଦ୍ଧେନ୍ଦୁ ଓ ପଦ୍ମ ଏ ଦୁହେଁ ପ୍ରାୟ ଦୁଇଟି ବିପରୀତ ମେରୁ ଆଡ଼କୁ ନିଜକୁ ନିଜେ ଘୁଞ୍ଚେଇ ନେଇସାରିଥିଲେ– ଜୀବନର ଅବଶିଷ୍ଟ ଲମ୍ବା ବର୍ଷଗୁଡ଼ାକ ପାଇଁ । ଏଇ ଦଶନ୍ଧି ଭିତରେ 'ପଦ୍ମ' ପରିବର୍ତ୍ତେ 'ରକ୍ତ', ରକ୍ତ ହେଇ ଅନେକଟି ମୂଲ୍ୟବାନ ବର୍ଷ ବିତିଯାଇଥିଲା ବରଂ ।"[୨୦] ପଦ୍ମ ଭାରତୀୟ ସଂସ୍କୃତି, ସତ୍ୟ, ଶାନ୍ତି, ଅହିଂସାର ପ୍ରତୀକ ହୋଇଥିବାବେଳେ ରକ୍ତ ହେଉଛି ହିଂସା ଓ ଉଗ୍ର କମ୍ୟୁନିଜିମ୍‌ର ପ୍ରତୀକ ।

ଅଜିତ୍ ରାୟଙ୍କ ସମାଧିସ୍ତୂପ ଗଳ୍ପରେ ଗଳ୍ପ ନାୟକଙ୍କ ବଳଦିଆ ଜୀବନର ଅର୍ଥାତ ଯନ୍ତ୍ରଚାଳିତ ଦିନଚର୍ଯ୍ୟାର ପ୍ରତୀକାତ୍ମକ ଓ କାବ୍ୟିକ ଭାଷାଶୈଳୀ ଉଦ୍ଧାର ଯୋଗ୍ୟ– "ଗଲା କୋଡ଼ିଏ ବର୍ଷ ଧରି ସେ ସତେକି ତଳକୁ ମୁହଁ ପୋତି ଗୋରୁଗାଈଙ୍କ ପରି କୌଣସି ପଡ଼ିଆରୁ ଘାସ ଚରି ଚାଲିଥିଲା– ହଠାତ୍ ମୁହଁ ଟେକି ଉପରକୁ ଚାହିଁଦେବା ମାତ୍ରେ ପ୍ରଥମେ ଦେଖାଗଲା ସେଇ ବିଚିତ୍ର ଦୃଶ୍ୟଟି–ନଦୀ । ଏକ ବିସ୍ତୀର୍ଣ୍ଣ ବାଲୁକାଶଯ୍ୟା - ତା' ମଝିରେ ସୁନା ଶେଯରେ ରୂପାର କନ୍ୟାଟିଏ ପରି ଧାରେ ପାଣି ।"[୨୧]

ରୂପକଳ୍ପାତ୍ମକ ଭାଷାର ପ୍ରୟୋଗ ପରିଦୃଶ୍ୟ ହୁଏ ମାଟିର ସ୍ୱପ୍ନ ଗଳ୍ପରେ । ମଦନ ପାତ୍ର, ତା'ର ସ୍ତ୍ରୀ ଓ ଶିଶୁପୁତ୍ରକୁ ଗ୍ରାମବାସୀମାନେ ରକ୍ତାକ୍ତ କରି ଚାଲିଯିବା ପରର ଦୃଶ୍ୟ ଗଳ୍ପ ଭାଷାରେ ହେଲା– "ପାଚିଲା ଧାନ ବିଲରେ ହାତୀ ଦଳେ ପଶି ଚକଟା ଚକଟି କରି ସର୍ବନାଶ କରିଦେଇ ଗଲାଭଳି ମଦନ ପାତ୍ରଙ୍କ ଘରଟା ଦିଶୁଥାଏ ।"[୨୨]

ଗାଳ୍ପିକଙ୍କର ମିଥିଧର୍ମୀ ଭାଷାଶୈଳୀର ଉଦାହରଣ ପ୍ରେମର ପ୍ରମାଣ ଗଳ୍ପରୁ ନିଆଯାଇପାରେ । ବଳଭଦ୍ର ଗ୍ରାମର ଯୁବକମାନଙ୍କୁ ତାଙ୍କ ପିଲାଦିନର କୃଷ୍ଣ ଦର୍ଶନ ସମ୍ବନ୍ଧରେ କହିଥିବାର ଗଳ୍ପୋକ୍ତି ହେଲା– "କେବଳ କଦମ୍ବ ଗଛ ନୁହେଁ ବାବୁମାନେ, ଏଠି ଏଇ ଜାଗାରେ ଏଇ କଦମ୍ବ ବୃକ୍ଷର ଡାଳରେ ବସି ବଂଶୀବାଦନ କରିବାର ଦୃଶ୍ୟ ଦେଖିଛି ମୁଁ ସ୍ୱଚକ୍ଷୁରେ– ହଁ, ହଁ ସ୍ୱଚକ୍ଷୁରେ ଦେଖିଛି ମୁଁ ଏଇଠି, ଏଇ ଗଛଡାଳରେ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ ।"[୨୩]

ଚଳନ୍ତି ଠାକୁର ଗଳ୍ପରେ ବ୍ୟଞ୍ଜନାତ୍ମକ ଭାଷାଶୈଳୀର ଏକ ଦୃଷ୍ଟାନ୍ତ ଦିଆଯାଇପାରେ । ଉକ୍ତ ଗଳ୍ପରେ ମିସ୍କୁନ୍ ତା'ର ମାମୁଙ୍କୁ ସୂଚାଇ ଦେଇଛି– "ଆଇ ଆମ୍ ନଟ୍ ଏ ଡେଡ୍ ଗଡ୍ । ନୋ - ୟୁ କାନ୍ଟ ସେଲ୍ ମି - ୟୁ କାନ୍ଟ ସେଲ୍ ମି ।"[୨୪] ଗାଳ୍ପିକ ଶିଶୁ ଚରିତ୍ର ମିସ୍କୁନ୍‌କୁ ଭାରତୀୟ ଦେବ ପ୍ରତିମାର ପ୍ରତୀକ ରୂପେ ନେଇ ପ୍ରକାଶ କରନ୍ତି ଯେ ଭାରତୀୟ ଦେବତା ମୃତ ନୁହେଁ ସେ ଶିଶୁ ପରି ଜୀବନ୍ତ ଓ ଭାରତର ଭବିଷ୍ୟତ ।

ପ୍ରେମର ପ୍ରମାଣ ଗଳ୍ପରେ ବଳଭଦ୍ର ଗ୍ରାମର ଯୁବକମାନଙ୍କୁ ଉପଦେଶ ଦେବାର ବ୍ୟଞ୍ଜନାତ୍ମକ ଉକ୍ତି ହେଲା– "ଟେକା ପକେଇଲାବାଲାକୁ କୋଳେଇ ନବ, ସେ ପାରିକୁ ଯିବାକୁ ହେଲେ ଡଙ୍ଗା ଖୋଜିବ ନାଇଁ–କଅଣ ବୁଝିଲ ତ ?"[୨୫] ଉକ୍ତ ଉପଦେଶରୁ ଅହିଂସା ଓ ଆତ୍ମନିର୍ଭରଶୀଳତାର ଅର୍ଥ ପ୍ରକଟିତ ହୁଏ ।

ଚଳନ୍ତି ଠାକୁର ଗଳ୍ପ ସଂକଳନର ନାମକରଣ ମଧ୍ୟ ବ୍ୟଞ୍ଜନାତ୍ମକ । କାରଣ ଉକ୍ତ ସଂକଳନର ଅଧିକାଂଶ ଚରିତ୍ର ଭାରତୀୟ ଚଳନ୍ତି ସଂସ୍କୃତି, ପରମ୍ପରା, ବିଶ୍ୱାସର ପ୍ରତିନିଧିତ୍ୱ କରନ୍ତି । ମୁଖ୍ୟ ଗଳ୍ପ ଚଳନ୍ତି ଠାକୁରର ପ୍ରଧାନ ଚରିତ୍ର ମିସ୍କୁନ୍ ଭାରତୀୟ ପ୍ରତିମାର ଜୀବନ୍ତ ରୂପ ଓ ତାଙ୍କ ଗାରିମାର ବିଘୋଷକ ଭାବେ ସୁସ୍ପଷ୍ଟ । ଉକ୍ତ ଇଙ୍ଗିତପୂର୍ଣ୍ଣ ନାମକରଣରେ ଶାନ୍ତନୁ ଆଚାର୍ଯ୍ୟଙ୍କ ପାରଦର୍ଶିତା ପରିଦୃଷ୍ଟ ହୁଏ ।

ଚଳନ୍ତି ଠାକୁର ଗଳ୍ପ ପୁସ୍ତକରେ ରୂଢ଼ି, ଉପମାର ପ୍ରୟୋଗ ମଧ୍ୟ ଦେଖିବାକୁ ମିଳେ । ଏହାର ଏକ ଦୃଷ୍ଟାନ୍ତ ଅଗଷ୍ଟ ପନ୍ଦର ଗଳ୍ପରୁ ଦିଆଯାଇପାରେ– "କିନ୍ତୁ ଭାରତମାତା ବା ମହାତ୍ମାଗାନ୍ଧି ଶବ୍ଦ ତା' କାନରେ ବାଜିଲେ କ୍ଷଣକୁ 'ନାଲିକନା' ଦେଖାଇଲା ଭଳି ଫଁ ଫଁ ହୁଏ ସେ ।"[୨୬]

ଏତଦ୍‌ଭିନ୍ନ ଓଡ଼ିଆ ଢଗଢମାଳିର ପ୍ରୟୋଗ ମଧ୍ୟ ଉକ୍ତ ସଂକଳନରେ ପରିବେଷିତ ହୋଇଛି । 'ମଣିଷ ପ୍ରକୃତି ମଲେ ତୁଟେ', 'ଦୁଃଖେ ଅର୍ଜିତ ଯେତେ ଧନ ସେ ନୁହେଁ ସୁଖେ ପ୍ରୟୋଜନ' ଆଦି ଏହାର ନିଦର୍ଶନ ।

ନାଟକୀୟ ଶୈଳୀ ଓ ଚେତନା ପ୍ରବାହ ଶୈଳୀର ବ୍ୟବହାର ମଧ୍ୟ ପାଠକର ଦୃଷ୍ଟି ପଥାରୁଢ଼ ହୋଇଥାଏ । ଚେତନା ପ୍ରବାହ ଶୈଳୀ ମାଧ୍ୟମରେ ମାନବର ମନଗହନର ନିଖୁଣ ରୂପକୁ ରୂପାୟିତ କରାଯାଇଛି ।

ଚଳନ୍ତି ଠାକୁର ଗଳ୍ପ ପୁସ୍ତକର କେତେକ ସ୍ଥଳରେ ଗାଳ୍ପିକ ଫାଣ୍ଟାସିର ପ୍ରୟୋଗ କରିଛନ୍ତି । ବୃକ୍ଷସାକ୍ଷୀ ଗଳ୍ପରେ ଖଜୁରି ଗଛକୁ ପେମିର ଭୂତ ଲାଗିବା ଓ ତାହା ଚନ୍ଦ୍ରମଣିକୁ ସଂକ୍ରମିତ ହେବା, ଚଳନ୍ତି ଠାକୁର ଗଳ୍ପରେ ପାଞ୍ଚବର୍ଷ ବୟସ ଶିଶୁ ମିଣ୍ଟୁନ୍‌ର ତୀକ୍ଷ୍ଣ ବୁଦ୍ଧିବିବେକର ପ୍ରକାଶ, ପ୍ରେମର ପ୍ରମାଣ ଗଳ୍ପରେ ବଳଭଦ୍ରଙ୍କ କୃଷ୍ଣ ଦର୍ଶନ, କଲେଜ ହତାରେ ଜହ୍ନରାତି ଗଳ୍ପରେ ରାତ୍ରି ଜଗୁଆଳ ବୀରବାହାଦୁରର କୋକିଶିଆଳି ସହ ସଂପର୍କ ପ୍ରଭୃତି ଘଟଣା ଅଦ୍ଭୁତ । ଏହି ଅଦ୍ଭୁତ ବା ଫାଣ୍ଟାସି ଦ୍ୱାରା ଗାଳ୍ପିକ ସାମାଜିକ, ରାଜନୈତିକ, ଆଧ୍ୟାତ୍ମିକ ଓ ମାନବିକ ସମ୍ବେଦନଶୀଳତାର ଅପ୍ରିୟ ସତ୍ୟ ଉପସ୍ଥାପନ କରିଛନ୍ତି ।

ମନମର୍ମର, ଅରଣ୍ୟର ଚୂଳ, ଦୁର୍ବାର, ଏଇ ଶେଷପଦଟି, ଅଦିନ ବଉଳ, ଆଦ୍ୟ ସକାଳ ଆଦି ଗଳ୍ପ ସଂକଳନରେ ଫାଣ୍ଟାସିର ଯେଉଁ ଉଗ୍ରତା ପ୍ରକାଶ ପାଇଛି ଚଳନ୍ତି ଠାକୁର ଗଳ୍ପ ଗ୍ରନ୍ଥରେ ତାହାର ମାର୍ଜିତ ଓ ହୃଦୟସ୍ପର୍ଶୀ ରୂପ ଦେଖିବାକୁ ମିଳେ ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଗଳ୍ପ ରଚନାଶୈଳୀ ବେଶ୍ ମନୋଜ୍ଞ । ମନୋଜ୍ଞର ଦିଗନ୍ତ ବଡ଼ ଚମତ୍କାର–ତାହା ସହଜରେ ମନକୁ ଛୁଏଁ, କିନ୍ତୁ ବୁଝି ବୁଝାଇବା ପରି ଲାଗେ ନାହିଁ । ଯାହା ପ୍ରାଣକୁ ସ୍ପର୍ଶ କରେ ତାହା ଯେ ସବୁବେଳେ ମସ୍ତିଷ୍କଗ୍ରାହ୍ୟ ହେବ ତାହାର ସେପରି ଅର୍ଥ ନାହିଁ । ତା'ର ସହଯୋଗ ଗୋଟିଏ ମୁହୂର୍ତ୍ତରେ ହୃଦୟ ସହିତ ହେଲାବେଳେ ଆଉ ଏକ ମୁହୂର୍ତ୍ତରେ ମସ୍ତିଷ୍କ ସହିତ ସଂପନ୍ନ ହୋଇଥାଏ । ଫାଣ୍ଟାସି ଓ ରହସ୍ୟ ମିଶି ତାଙ୍କ ଗଳ୍ପକୁ ଏକାଧାରରେ ଅଜ୍ଞାତ ନିମନ୍ତେ ଉତ୍ସୁକତା ସୃଷ୍ଟି କରାଏ ଏବଂ ଅଦ୍ଭୁତ ବସ୍ତୁ ପ୍ରତି ଆକର୍ଷଣ ଭାବ ଜନ୍ମାଏ । ଏହି ଅଜ୍ଞାତ, ଅଦ୍ଭୁତ ଆମ ପରମ୍ପରା ଓ ବିଶ୍ୱାସରେ କିଛି ଅସ୍ୱାଭାବିକ ନୁହେଁ । ଯାହାକୁ ପ୍ରତୀକରୂପେ ନେଇ ଗାଳ୍ପିକ ଭାରତୀୟ ମୂଲ୍ୟବୋଧର କଥାକୁ ନୂଆ ଢଙ୍ଗରେ ପରିବେଷଣ କରିଛନ୍ତି ।

ଚଳନ୍ତି ଠାକୁର ଗୋଟିଏ କ୍ଷୁଦ୍ର ପୁସ୍ତକ ହେଲେ ମଧ୍ୟ ଏଥିରେ ପୂରି ରହିଛି ଭାରତୀୟ ଚିନ୍ତା ଚେତନାର ମହାନତା । ଗଳ୍ପଗୁଡ଼ିକର ଛତ୍ରେ ଛତ୍ରେ ଜୀବନ ଜିଜ୍ଞାସାର ସ୍ୱର ଝଙ୍କୃତ ହୋଇଛି । ମାନବର ଅସତ୍ କର୍ମ ଓ ଅସହାୟ ଭାବକୁ ଉଖାରି ଦେଖାଇ ଦିଆଯିବା ସହିତ ତା'ର ଦୁଃଖରେ ଗଭୀର ସମବେଦନା ଜ୍ଞାପନ କରାଯାଇଛି । ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ବିଚାର କଲେ ଏହି ସଂକଳନର ଗଳ୍ପଗୁଡ଼ିକ ସଫଳ । ଚଳନ୍ତି ଠାକୁର କ୍ଷୁଦ୍ର ମଧ୍ୟେ ବିରାଟର ସନ୍ଧାନ ଦେଉଥିବାରୁ ଗାଳ୍ପିକ ଶାନ୍ତନୁଙ୍କର ଏହା ଏକ ଅମୂଲ୍ୟ କୃତି ଏବଂ ଓଡ଼ିଆ ଗଳ୍ପ ସାହିତ୍ୟରେ ଏହାର ମୂଲ୍ୟ ଅନସ୍ୱୀକାର୍ଯ୍ୟ ।

**ଅନ୍ତଟୀକା :**


୧. ସପ୍ତର୍ଷି, ନଭେମ୍ବର/ଡିସେମ୍ବର, ୧୯୮୦, ପୃ.୧ ।
୨. ଶାନ୍ତନୁ କୁମାର ଆଚାର୍ଯ୍ୟ–ଚଳନ୍ତି ଠାକୁର, ପୃ.୭ ।
୩. ତତ୍ରୈବ, ପୃ.୧୬ ।
୪. ତତ୍ରୈବ, ପୃ.୬୬ ।
୫. ତତ୍ରୈବ, ପୃ.୪ ।
୬. ତତ୍ରୈବ, ପୃ.୧୨ ।
୭. ତତ୍ରୈବ, ପୃ.୮୬ ।
୮. ତତ୍ରୈବ, ପୃ.୨୨ ।
୯. ତତ୍ରୈବ, ପୃ.୨୭ ।
୧୦. ତତ୍ରୈବ, ପୃ.୩୨ ।
୧୧. ତତ୍ରୈବ, ପୃ.୮୧ ।
୧୨. ତତ୍ରୈବ, ପୃ.୫୨ ।
୧୩. ତତ୍ରୈବ, ପୃ.୪୫ ।
୧୪. ତତ୍ରୈବ, ପୃ.୯୫ ।

୧୫. ପ୍ରଜାତନ୍ତ୍ର, ୦୫.୦୨.୧୯୯୪, ପୃ.୫ ।

୧୬. ଶାନ୍ତନୁ କୁମାର ଆଚାର୍ଯ୍ୟ–ଚଳନ୍ତି ଠାକୁର, ପୃ.୨୦ ।

୧୭. ତତ୍ରୈବ, ପୃ.୭୮-୭୯ ।

୧୮. ତତ୍ରୈବ, ପୃ.୬୫ ।

୧୯. ତତ୍ରୈବ, ପୃ.୧୦୫ ।

୨୦. ତତ୍ରୈବ, ପୃ.୩୩ ।

୨୧. ତତ୍ରୈବ, ପୃ.୯୦ ।

୨୨. ତତ୍ରୈବ, ପୃ.୮୭ ।

୨୩. ତତ୍ରୈବ, ପୃ.୬୭ ।

୨୪. ତତ୍ରୈବ, ପୃ.୩୦ ।

୨୫. ତତ୍ରୈବ, ପୃ.୭୪ ।

୨୬. ତତ୍ରୈବ, ପୃ.୯୯ ।



## ସହାୟକ ଗ୍ରନ୍ଥ ଓ ପତ୍ରପତ୍ରିକା


- କାଳିନ୍ଦୀ ଚରଣ ପାଣିଗ୍ରାହୀ– *ମୋ କଥାଟି ସରିନାହିଁ,* କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର : କଟକ, ୧୯୫୭ ।
- କିଶୋରୀଚରଣ ଦାଶ– *କଥା ସାହିତ୍ୟର କଳା ଓ କାରିଗରୀ,* ଇଷ୍ଟର୍ଣ୍ଣ ମିଡିଆ ଲିଃ : ଭୁବନେଶ୍ୱର, ୧୯୯୦ ।
- କୁଞ୍ଜବିହାରୀ ଦାଶ– *ଓଡ଼ିଆ ଲୋକଗୀତ ଓ କାହାଣୀ,* ବିଶ୍ୱଭାରତୀ : ଶାନ୍ତିନିକେତନ, ୧୯୫୮ ।
- ଗୋପାଳ ଚନ୍ଦ୍ର ମିଶ୍ର– *ଚଳିତ ଶତାବ୍ଦୀର ଭାରତୀୟ ସାହିତ୍ୟ,* ଗ୍ରନ୍ଥମନ୍ଦିର : କଟକ, ୧୯୭୪ ।
- ଦାଶରଥି ଦାସ– *ସାହିତ୍ୟ ସନ୍ଧାନ,* ଅଗ୍ରଦୂତ : କଟକ, ୧୯୭୫ ।
- ନଟବର ସାମନ୍ତରାୟ– *ଓଡ଼ିଆ ସାହିତ୍ୟର ଇତିହାସ,* ବାଣୀଭବନ, ଭୁବନେଶ୍ୱର, ୧୯୮୩ ।
- ନିତ୍ୟାନନ୍ଦ ଶତପଥୀ– *ଗଳ୍ପ ଓ ଗାଳ୍ପିକ,* ଓଡ଼ିଶା ବୁକ୍ ଷ୍ଟୋର୍ : କଟକ, ୧୯୮୬ ।
- ପୂର୍ଣ୍ଣାନନ୍ଦ ଦାନୀ– *ଓଡ଼ିଆ ଗଳ୍ପ ପ୍ରସଙ୍ଗ,* ମେନକା ପ୍ରକାଶନୀ : ସମ୍ବଲପୁର, ୧୯୮୯ ।
- ବସନ୍ତ କୁମାର ଶତପଥୀ– *ଗଙ୍ଗା ଓ ଗାଙ୍ଗୀ,* ଓଡ଼ିଶା ବୁକ୍ ଷ୍ଟୋର : କଟକ, ୧୯୮୧ ।
- ବାଳକୃଷ୍ଣ ଶତପଥୀ– *ଆଧୁନିକ ଓଡ଼ିଆ କଥା ସାହିତ୍ୟର ସ୍ୱର ଓ ବ୍ୟଞ୍ଜନ,* ସାରସ୍ୱତ ପୁସ୍ତକ ଭଣ୍ଡାର : ସମ୍ବଲପୁର, ୧୯୮୬ ।
- ବିଭୂତି ଭୂଷଣ ତ୍ରିପାଠୀ– *ସେତୁ,* ବିଦ୍ୟାପୁରୀ : କଟକ, ୧୯୮୮ ।
- ବୈଷ୍ଣବ ଚରଣ ସାମଲ– *ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ (୧ମ ଓ ୨ୟ ଭାଗ),* ବୁକ୍‌ସ ଏଣ୍ଡ୍ ବୁକ୍‌ସ : କଟକ, ୧୯୯୦ ।
- ବୈଷ୍ଣବ ଚରଣ ସାମଲ– *ଓଡ଼ିଆ ଗଳ୍ପ : ଗତି ଓ ପ୍ରକୃତି,* ସାଥୀମହଲ : କଟକ, ୧୯୯୧ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ– *ନରକିନ୍ନର,* ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ : କଟକ, ୧୯୬୨ ।

- ଶାନ୍ତନୁ କୁମାର ଆଚାର୍ଯ୍ୟ–*ମନମର୍ମର,* କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ କଟକ, ୧୯୬୨ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଆକାଶକୁ ସାତୋଟି ପାହାଚ,* ଫ୍ରେଣ୍ଡସ୍ ପବ୍ଲିଶର୍ସ କଟକ, ୧୯୬୩ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଶତାବ୍ଦୀର ନଚିକେତା,* ଗ୍ରନ୍ଥମନ୍ଦିର : କଟକ, ୧୯୬୫ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଦୁର୍ବାର,* ଗ୍ରନ୍ଥମନ୍ଦିର : କଟକ, ୧୯୬୫ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ତିନୋଟି ରାତିର ସକାଳ,* ଗ୍ରନ୍ଥମନ୍ଦିର : କଟକ, ୧୯୬୯ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଶକ୍ତିର କରାମତି,* ଗ୍ରନ୍ଥମନ୍ଦିର : କଟକ, ୧୯୭୧ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ– *ଏଇ ଶେଷ ପଦଟି,* କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ : କଟକ, ୧୯୭୨ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଦକ୍ଷିଣାବର୍ତ୍ତ,* କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ କଟକ, ୧୯୭୩ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଅରଣ୍ୟର ଚୂଳ,* ଗ୍ରନ୍ଥମନ୍ଦିର : କଟକ, ୧୯୭୪ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଯାତ୍ରାର ପ୍ରଥମ ପାଦ,* ଗ୍ରନ୍ଥମନ୍ଦିର : କଟକ, ୧୯୭୬ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ,* ଗ୍ରନ୍ଥମନ୍ଦିର : କଟକ, ୧୯୭୭ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଅଦିନ ବଉଳ,* ଗ୍ରନ୍ଥମନ୍ଦିର : କଟକ, ୧୯୭୮ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଶକୁନ୍ତଳା,* ଗ୍ରନ୍ଥମନ୍ଦିର : କଟକ, ୧୯୮୦ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ– *ଏକବିଂଶ ଶତାବ୍ଦୀ ପାଇଁ ଗଳ୍ପ,* ମୟୂର ପବ୍ଲିକେଶନ : ଭୁବନେଶ୍ୱର,୧୯୮୧ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*କରଞ୍ଜିଆ ଡାଏରୀ,* ଗ୍ରନ୍ଥମନ୍ଦିର : କଟକ, ୧୯୮୪ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ଆଦ୍ୟ ସକାଳ,* ଗ୍ରନ୍ଥମନ୍ଦିର : କଟକ, ୧୯୮୫ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ମନ୍ତ୍ରୀଙ୍କ ସେପାରି,* ଇଷ୍ଟର୍ଣ୍ଣ ମିଡିଆ : ଭୁବନେଶ୍ୱର, ୧୯୮୮ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ–*ସର୍ପଯାନ,* ଗ୍ରନ୍ଥମନ୍ଦିର : କଟକ, ୧୯୮୯ ।

- ଶାନ୍ତନୁ କୁମାର ଆଚାର୍ଯ୍ୟ– *ନିତିଦିନିଆ ଜୀବନରେ ବିଜ୍ଞାନ,* ଗ୍ରନ୍ଥମନ୍ଦିର : କଟକ, ୧୯୮୯ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ– *ସାହସିକ ବୈଜ୍ଞାନିକ ଆବିଷ୍କାର ଓ ଉଦ୍‌ଭାବନ,* ଗ୍ରନ୍ଥମନ୍ଦିର : କଟକ, ୧୯୮୯ ।
- ଶାନ୍ତନୁ କୁମାର ଆଚାର୍ଯ୍ୟ– *ଚଳନ୍ତି ଠାକୁର,* ଗ୍ରନ୍ଥମନ୍ଦିର : କଟକ, ୧୯୯୧ ।
- ସଚ୍ଚିଦାନନ୍ଦ ରାଉତରାୟ– *ସାହିତ୍ୟରେ ମୂଲ୍ୟବୋଧ,* ଅଗ୍ରଦୂତ : କଟକ, ୧୯୭୪ ।
- Santanu Kumar Acharya–*A brief bio-data and resume of Prof. S.K.Acharya.*
- *ଅଭିଷେକ,* କଟକ, ୧ମ ବର୍ଷ/୧ମ ସଂଖ୍ୟା, ୧୯୯୩ ।
- *କୋଣାର୍କ* (ଗଳ୍ପ ବିଶେଷାଙ୍କ), ଭୁବନେଶ୍ୱର, ୩୦ଶ ସଂଖ୍ୟା, ୧୯୭୬ ।
- *କୋଣାର୍କ,* ଭୁବନେଶ୍ୱର, ୫୦ଶ ସଂଖ୍ୟା, ୧୯୮୩ ।
- *କୋଣାର୍କ,* ଭୁବନେଶ୍ୱର, ୯୪ତମ ସଂଖ୍ୟା, ୧୯୯୪ ।
- *ନିଶାନ୍ତ,* କଟକ, ପ୍ରଥମ ବର୍ଷ/ତୃତୀୟ ସଂଖ୍ୟା/ଶିଶିର, ୧୯୯୪ ।
- *ପ୍ରଜାତନ୍ତ୍ର,* କଟକ, ଫେବୃଆରୀ ୫, ୧୯୯୪ ।
- *ପ୍ରଜାତନ୍ତ୍ର* (ସାପ୍ତାହିକ), କଟକ, ଜାନୁଆରୀ ୧୬-୨୨, ୧୯୯୪ ।
- *ବାଙ୍‌ମୟ,* କଟକ, ବିଷୁବ ସଂଖ୍ୟା, ୧୯୯୪ ।
- *ସପ୍ତର୍ଷି,* ସମ୍ବଲପୁର, ନଭେମ୍ବର/ଡିସେମ୍ବର, ୧୯୮୦ ।
- *ସମାଜ,* କଟକ, ଜାନୁଆରୀ ୧୬, ୧୯୯୪ ।
- *ସମ୍ବାଦ,* ଭୁବନେଶ୍ୱର, ଜାନୁଆରୀ ୨୩, ୧୯୯୪ ।
- *ସମ୍ଭାବନା* (ମହର୍ଷି ମହାବିଦ୍ୟାଳୟ ମୁଖପତ୍ର), ଭୁବନେଶ୍ୱର, ୭ମ ସଂଖ୍ୟା, ୧୯୯୩-୯୪ ।






ଡକ୍ଟର ଚିତ୍ତ ରଂଜନ ପଣ୍ଡା ଏମ୍.ଏ (ଓଡ଼ିଆ), ଏମ୍.ଏ (ସୋସିଓ ଲିଙ୍ଗୁଇଷ୍ଟିକ୍), ଏମ୍.ଫିଲ୍, ପି.ଏଚ୍.ଡ଼ି, ଏମ୍.ବି.ଏ, ଏଲ୍.ଏଲ୍.ବି, ପି.ଜି.ଡି.ସି.ଏ ଆଦି ଶିକ୍ଷାଗତ ଯୋଗ୍ୟତାର ଅଧିକାରୀ । ଅଧୁନା ସେ ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ, ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକରେ ଅଧ୍ୟାପନା କାର୍ଯ୍ୟରେ ନିୟୋଜିତ । ଡକ୍ଟର ପଣ୍ଡା ଅଦ୍ୟାବଧି ଷାଠିଏରୁ ଊର୍ଦ୍ଧ୍ୱ ଅନ୍ତର୍ଜାତୀୟ, ଜାତୀୟ ଓ ରାଜ୍ୟସ୍ତରୀୟ ଆଲୋଚନା ଚକ୍ର, ସମ୍ମିଳନୀ, କର୍ମଶାଳା ପ୍ରଭୃତିରେ ଭାଗନେଇ ଏବଂ ନିଜସ୍ୱ ନିବନ୍ଧ ଉପସ୍ଥାପନ କରି ବେଶ୍ ପ୍ରଶଂସିତ ହୋଇଛନ୍ତି । ସମାଲୋଚକ, ଗବେଷକ, ଗାଳ୍ପିକ ଓ କବି ଭାବରେ ସେ ସୁଖ୍ୟାତି ଅର୍ଜନ କରିଛନ୍ତି । ସାହିତ୍ୟିକ ବ୍ୟତୀତ ସମାଜସେବୀ ରୂପେ ତାଙ୍କର ଆଉ ଏକ ବିଶେଷ ପରିଚୟ ମଧ୍ୟ ରହିଛି ।




ISBN 93-84763-73-X
9789384763732